ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ



*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

ସମ୍ପାଦିକା

**ଅନସୂୟା ନନ୍ଦ**



**୬୪ ବର୍ଷ, ଅଷ୍ଟମ ସଂଖ୍ୟା**
**ମାର୍ଚ୍ଚ, ୨୦୧୫**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**

*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* : ୯୮୬୧୦୬୪୮୯୧,
୨୪୨୨୫୯୭, ୨୪୨୦୦୭୫
*email :*
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗର ଲେଖକ--
**ଇଂ ରଘୁନାଥ ପ୍ରସାଦ ଦାସ, ରବୀନ୍ଦ୍ର କୁମାର ସାହୁ, ପ୍ରଦୀପ କୁମାର ଦାଶ ।**

## ଗଳ୍ପ ଓ ଜୀବନୀ



## କବିତା



## ଭ୍ରମଣ କାହାଣୀ



## ଜ୍ଞାନ-ବିଜ୍ଞାନ



## ମନୋରଞ୍ଜନ



## ଆମ ଚିଠି ମୁଣିରୁ

**ଅନୁଗୋଳରୁ ବୁଦ୍ଧଦେବ ସେଠୀ--** ଏ ମାସ 'ସଂସାର'ରେ ସବୁଥର ଭଳି ମନଛୁଆଁ ଲେଖାସବୁ ରହିଛି । ଲେଖକ ମାନଙ୍କୁ ଧନ୍ୟବାଦ ।

**ଅରୁଣୋଦୟ ନଗରରୁ ଡା. ଅଜିତାନନ୍ଦ ଗୋସ୍ୱାମୀ--** ଏ ମାସ ସଂସାରରେ (୧) 'ବୁଦ୍ଧିଶାଳୀର ଜିତାପଟ' ବିଷୟରେ ବୁଦ୍ଧିଶାଳୀ ଅବ୍ୟବହୃତ ଶବ୍ଦ । ଏହା ପରିବର୍ତ୍ତେ ବୁଦ୍ଧିମାନ ହେବ । **ଉତ୍ତର-** ବୁଦ୍ଧିଶାଳୀ ଶବ୍ଦଟି ତରୁଣ ଶବ୍ଦକୋଷ ଅଭିଧାନରେ ରହିଛି । ଆପଣ ଦ୍ୱିତୀୟରେ ଚନ୍ଦ୍ରର ତାପମାତ୍ରା ବିଷୟରେ ଲେଖିଥିବା ସୂଚନାଟି ସମ୍ପୂର୍ଣ୍ଣ ସତ୍ୟ ନୁହେଁ । କାରଣ କେହି ଚନ୍ଦ୍ରର ତାପମାତ୍ରା ଠିକ ସୂଚାଇ ପାରିନାହାନ୍ତି-- ଏହା ଭିନ୍ନଭିନ୍ନ ହେବା ସ୍ୱାଭାବିକ ।

**କନ୍ଧବେରେଣୀ, ଚମ୍ପେଶ୍ୱର କଟକରୁ ନିରଞ୍ଜନ ଖଟୁଆ --** ରାମକୃଷ୍ଣ ନନ୍ଦଙ୍କ ରଚିତ ବିଷୟ 'ଦୁଇଜଣ ମହିଳା' ଭଲଲାଗିଲା । ଏହା ବ୍ୟତୀତ କଇଁଛର ନାମ ଅଦ୍ୱୈତ, ଭଗବାନ କାହାପରି, ଭାବି ଦେଖନ୍ତୁ, ସୁମାତ୍ରା ମହାରାଣୀ, ଶୋକାଞ୍ଜଳି, ନୀଳ ସନ୍ନ୍ୟାସୀ, ସାଦା ପୋଷାକର କଥା ଭଲଲାଗିଲା ।

**ସରସ୍ୱତୀ ଶିଶୁ ବିଦ୍ୟାମନ୍ଦିର, କେନ୍ଦୁଝରଗଡ଼ରୁ ପ୍ରଜ୍ଞାସ୍ମିତା ମହାନ୍ତ--** 'ସଂସାର' ପତ୍ରିକା ପଢ଼ିବାକୁ ମତେ ଭାରି ଭଲ ଲାଗୁଛି । ଲେଖକମାନଙ୍କୁ ଅଭିନନ୍ଦନ ଜଣାଉଛି ।

**ଭୁବନେଶ୍ୱରରୁ ଦୁର୍ଗା ଚରଣ ନନ୍ଦ--** 'ସଂସାର' ପତ୍ରିକା ଯେ ଶ୍ରେଷ୍ଠ ପତ୍ରିକା, ଏଥିରେ କାହାରି ଦ୍ୱିମତ ନାହିଁ । କାଳର କରାଳ ସ୍ରୋତରେ କେତୋଟି ସମସାମୟିକ ପତ୍ରିକା ବିଲୀନ ହୋଇଯାଇଥିଲେ ମଧ୍ୟ ଏ ପତ୍ରିକାଟି ଯାତ୍ରା ପଥରେ ଆଗେଇ ଚାଲିଛି । ଈଶ୍ୱର କରନ୍ତୁ ଏହା ଉନ୍ନତି କରୁ ।

**ଏ ମାସର ପ୍ରଚ୍ଛଦ-**ଏ ମାସ ପ୍ରଚ୍ଛଦରେ ମୟୂର ବିଷୟରୁ ଚିତ୍ର ପ୍ରଦତ୍ତ ।



## ଶ୍ରଦ୍ଧାଞ୍ଜଳି

ଆମର ଶୁଭେଚ୍ଛୁ, ସଂସାରପ୍ରେମୀ ତଥା ପ୍ରିୟ ବିଜ୍ଞାନ ଲେଖକ ଡକ୍ଟର ବସନ୍ତ କୁମାର ବେହୁରା ଆଉ ଇହଜଗତରେ ନାହାନ୍ତି । ଗତ ୧୬ ତାରିଖରେ ୯୪ ବର୍ଷରେ ତାଙ୍କର ପରଲୋକ ହୋଇଛି । ୧୯୫୬ ମସିହାରୁ ଲଗାତାର ତାଙ୍କର ବିଜ୍ଞାନ ସମ୍ବନ୍ଧୀୟ ଲେଖା ଆମ ପତ୍ରିକାର ପୃଷ୍ଠାକୁ ପୁଷ୍ଟ କରି ଆସୁଥିଲା ଦୀର୍ଘ ୫୪ ବର୍ଷ ଧରି । ତାଙ୍କର ନିଃସ୍ୱାର୍ଥ, ନିରଳସ ସାଧନା ରାଜ୍ୟର ବିଜ୍ଞାନ ଜଗତ ପାଇଁ ଆଦର୍ଶ ହୋଇ ଚିରଦିନ ରହିଥିବ ।

ତାଙ୍କର ଅମର ଆତ୍ମା ଚିରଶାନ୍ତି ଲାଭ କରୁ-- ଏତିକି କାମନା ସହ ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ ।

--'ସଂସାର' ପରିବାର

## ❀❀ ଅଭିନନ୍ଦନ ❀❀

ବରଗଡ଼ର ଧନୁଯାତ୍ରା ମହୋତ୍ସବ ସମିତି ତଥା ଶିଶୁସାହିତ୍ୟ ସଂସଦ ତରଫରୁ ଆମର ପରିଚିତ ଲେଖକ ଶ୍ରୀ ନାମଯଜ୍ଞ ମିଶ୍ରଙ୍କୁ 'ବିଶିଷ୍ଟ ଶିଶୁ ସାହିତ୍ୟିକ' ସମ୍ମାନରେ ସମ୍ମାନିତ କରାଯାଇଛି । ତାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଛୁ ।

**--ସଂସାର 'ପରିବାର'**

# ସଦ୍ଧୋଟପଣିଆ ମଣିଷକୁ ବଡ଼ କରେ

ଶ୍ରୀ ସୁଭାଷ ଚନ୍ଦ୍ର ମହାନ୍ତି

ସେଦିନ ଥାଏ ଶ୍ରାବଣ ମାସର କୃଷ୍ଣପକ୍ଷ ଦ୍ୱାଦଶୀ ତିଥି। ଗାଁ'ର ଚାରିଆଡ଼େ ଆତଙ୍କ। ରାସ୍ତାଘାଟ ଥମ୍ କରୁଥାଏ । ସମସ୍ତଙ୍କ ଆଖି ଆଗରେ ନାଚୁଥିଲା ଖରସ୍ରୋତା ନଦୀର ଏ କୂଳ ସେ କୂଳ ଖାଉଥିବା ପାଣିର ସୁଅ। ଗୋଟାକୁ ଗୋଟା ହାବୁକା ମାରି କେତେ କ'ଣ ଭସାଇନେଇ ବହିଯାଉଛି ନଈର ପାଣି।

ସମସ୍ତେ ଦଳ ଦଳ ହୋଇ ରୁଣ୍ଡ ହେଉଛନ୍ତି ନଈ ବନ୍ଧ ଉପରେ। ସମସ୍ତଙ୍କ ମନରେ ଗୋଟିଏ ଭୟ-- ଯଦି ବନ୍ଧ ଭାଙ୍ଗେ, ତେବେ କ'ଣ ହେବ ସେମାନଙ୍କର।

ଦଇବ ଦଉଡ଼ି ମଣିଷ ଗାଇ, ଯେଣିକି ଟାଣଇ ସେଣିକି ଯାଇ। ସବୁ ସେଇ ଈଶ୍ୱରଙ୍କ ଉପରେ ଭରସା ରଖିଥା'ନ୍ତି ଗାଁ' ଯାକର ଲୋକ।

ସମୟ ଓ ସୁଅ କାହାରିକୁ କେବେ ଅପେକ୍ଷା କରେନା। ସେ ନିଜର କର୍ମ କରିବାରେ ଲାଗି ରହିଥାଏ ଅବିରତ ଭାବରେ। ତା' କରାଳ କବଳରୁ କେହି କେବେ ବାଦ୍ ପଡ଼ନ୍ତି ନାହିଁ। ତା'ପାଖରେ ସମସ୍ତେ ସମାନ। ଧନୀ, ନିର୍ଧନ, ବଡ଼, ସାନ ସବଳ, ଦୁର୍ବଳ, ଜୀବଜନ୍ତୁ ପଶୁପକ୍ଷୀର ପ୍ରଭେଦ ନ ଥାଏ।

ସେହି ସମୟରେ ସୁଅରେ ଚାହୁଁ ଚାହୁଁ ନଈର ପାଣି ଭଉଁରି କାଟି କାଟି ବେଳକୁ ବେଳ ଫୁଲି ଫୁଲି ଉଠିଲା।

ରାତି ଅଧ। ଗାଁ'ର କେତେକ ଲୋକଙ୍କୁ ଛାଡ଼ିଦେଲେ ଅନ୍ୟମାନେ ଶାନ୍ତିରେ ଶୋଇପଡ଼ିଥାନ୍ତି ଯେଝା ଯେଝା ଘରେ ଛୁଆପିଲାର ସଂସାର ନେଇ। ସେତିକିବେଳେ ଘୋର ଗର୍ଜନ କରି ନଈର ସୁଅ ହଠାତ୍ ବନ୍ଧର ଗୋଟିଏ ସ୍ଥାନରେ ଘାଇ କରି ପକାଇଲା। ଚାହୁଁ ଚାହୁଁ ଚହଳ ପଡ଼ିଗଲା ଗାଁ' ଗୋଟାକରେ। କିଏ ଆଖି ମଳି ମଳି, କିଏ ହତବାକ୍ ହୋଇ ଘରୁ ପଦାକୁ ଦଉଡ଼ି ଆସିଲେ। ତା'ପରେ ଲାଗିପଡ଼ିଲେ ନିଜ ନିଜର ପିଲାଛୁଆ, ଧନ, ଦୌଲତ, ଗାଇ, ଗୋରୁ, ଛେଳି, ମେଣ୍ଢାଙ୍କୁ ନିରାପଦ ସ୍ଥାନକୁ ନେଇ ସମ୍ଭାଦିବାକୁ।

ଠିକ୍ ସେତିକିବେଳେ ଏଣେ ମୁଣ୍ଡରେ ହାତ ଦେଇ ବସିଲେ ସୁଜିତ୍‌ର ମା'। ତାଙ୍କ ଦୁନିଆରେ ସୁଜିତ୍ ଛଡ଼ା ଆଉ କେହି ନାହିଁ। ବହୁ ଦିନରୁ ସୁଜିତ୍‌ର ବାପା ସଂସାରରୁ ବିଦାୟ ନେଇ ଗଲେଣି। ଗରିବ ଦୁନିଆରେ ସେ ଆଉ ସୁଜିତ୍। ଗାଇ, ଗୋରୁ, ଛେଳି କିଛି ରଖି ତାଙ୍କୁ ହିଁ ଭରସା କରି ଚଳନ୍ତି ସେ ଦୁହେଁ। ସେହି କଷ୍ଟ ଉପାର୍ଜିତ ଧନରୁ ଖର୍ଚ୍ଚ କରି ମା' ସୁଜିତ୍‌ର ପାଠପଢ଼ା ପାଇଁ ଯତ୍ନ ନିଅନ୍ତି।



ସେ ଉଠିଲା ବେଳକୁ ଦେଖିଲା ଝାଟିମାଟି ଗୁହାଳଟି ତାଙ୍କର ପାଣି ସୁଅରେ ଭାଙ୍ଗିଯାଇଛି। ଗାଈ, ଗୋରୁ, ଛେଳି କିଏ କୁଆଡ଼େ ଭାସିଯାଇଛନ୍ତି। ନଈବଢ଼ିଆ ଗାଁ ବୋଲି ନିଜ ଘରଟି କେଉଁ ଅମଳରୁ ଉଚ୍ଚ ଡିଅ ଉପରେ ତିଆରି ହୋଇଥିଲା। ତଥାପି ସେ ଡିଅ ଟପି କାଛରେ ପାଣି ଆସି ଲାଗିଲାଣି। କିଛି ଉପାୟ୍ ନାହିଁ, କ'ଣ କରିବେ ଏବେ ?

ଚାରିଆଡ଼େ ଚିତ୍କାର। ଅଗତ୍ୟା ପୁଅକୁ ନେଇ ଚାଳ ଉପରକୁ ଉଠିଗଲେ ସୁଜିତ୍‌ର ମା' । ଉପାସରେ ଚାରିଦିନ କଟାଇଲେ ସେ ଦୁହେଁ ସେଇ ଚାଳ ଉପରେ। ଆଠ ବର୍ଷର ପୁଅ ସୁଜିତ୍ କ'ଣ ବୁଝିବ ! ମା'କୋଳରେ ମୁହଁ ଲୁଚାଇ ଅଳି କରେ ଖାଇବା ପାଇଁ। ନରମ ଛାତିକୁ ପଥର କରି ସୁଜିତ୍‌ର ମା' ଖାଲି ଶୂନ୍ୟ ଆକାଶକୁ ଚାହିଁ ରହନ୍ତି । ଉଷୁମ୍ ଲୁହ ଦୁଇବୁନ୍ଦା ଆଖିରୁ ନୀରବରେ ଗଡ଼ିଆସେ।

ଦେଖିଲେ ଦୂରରୁ ଗୋଟିଏ ନୌକା ଭାସି ଭାସି ଯାଉଛି। ଅଗତ୍ୟା ଜୀବନ ବିକଳରେ ରକ୍ଷା ପାଇବା ପାଇଁ ଚିତ୍କାର କରି ଉଠିଲେ ।

ସେ ନୌକା ଥିଲା ସରକାରଙ୍କର ସାହାଯ୍ୟକାରୀ ନୌକା ଭିତରୁ ଗୋଟିଏ। ସେମାନଙ୍କ ସାହାଯ୍ୟରେ ରକ୍ଷା ପାଇ କୂଳକୁ ଆସିଲେ। ସେ କର୍ମଚାରୀଙ୍କ ପାଖରେ କୃତଜ୍ଞତାରେ ଭରିଗଲା ସୁଜିତ୍ ମା'ର ହୃଦୟ୍।

ଚାରିଆଡୁ ପାଣି ଛାଡ଼ିଗଲା। ସମସ୍ତେ ନିଜ ନିଜ ଘରକୁ ଫେରିଲେ। ସୁଜିତ୍ ଓ ସୁଜିତର ମା' ଘରକୁ ଫେରିଲେ। ତାଙ୍କର ଘର ଚାଳଟା ଛଡ଼ା ଆଉ କିଛି ସମ୍ବଳ ନ ଥିଲା।

ନାନା ଆଡୁ ଏ ନଈବଢ଼ିଆ ଅଞ୍ଚଳକୁ କିଏ ଚୁଡ଼ା ବାଣ୍ଟି ଆସିଲେ, କିଏ ଲୁଗା ବାଣ୍ଟି ଆସିଲେ, କିଏ ଔଷଧ ବାଣ୍ଟିଲେ। ଏହିପରି ଅନେକ ଜିନିଷ ବଣ୍ଟା ହେଉଥାଏ। ସୁଜିତ ଓ ତା'ର ମା' ଯା'ନ୍ତି; ହେଲେ ଭିଡ଼ ଭିତରେ ପଶିପାରନ୍ତି ନାହିଁ। ସମସ୍ତଙ୍କୁ ଚାହିଁରହନ୍ତି କରୁଣ ଚାହାଣୀରେ। ଶେଷବେଳକୁ କିଛି ପା'ନ୍ତି; ନ ହେଲେ କେଉଁଦିନ ନ ପାଇ ନିରାଶରେ ଫେରନ୍ତି ନିଜ କର୍ମକୁ ଆଦରି।

ଦିନକର ଘଟଣା। କୌଣସି ଧନୀଲୋକ ରୁଟି ଓ ଲୁଗା ବାଣ୍ଟିବା ପାଇଁ ଆସିଥା'ନ୍ତି। ରୁଟି ପୁଣି ଜାମା, ଲୁଗା ପାଇଁ ଲୋକାରଣ୍ୟ । ତା'ରି ଭିତରେ ଧୀରସ୍ଥିର ହୋଇ ଠିଆ ହୋଇଥାଏ ସୁଜିତ୍ କାହାକୁ କିଛି ନ କହି। କେତେ ଲୋକଙ୍କ କହୁଣି ମାଡ଼, କେତେ ଲୋକଙ୍କ ଠେଲାପେଲା ନିରବରେ ସହୁଥାଏ ତୁଠ ପଥରଟିଏ ହୋଇ।

ଲୋକ କମିବାରେ ଲାଗିଲେ। ଜିନିଷସବୁ ଧୀରେ ଧୀରେ ସରିବାକୁ ବସିଲା। ଏତିକିବେଳେ ସେ ଧନୀ ଲୋକଟି ପାଟିକରି ବାଣ୍ଟୁଥିବା ଲୋକଙ୍କୁ କହିଲେ, "ଦେଖ, ସେଠି ଛୋଟ ପିଲାଟିଏ କେତେବେଳରୁ ଚୁପ୍‌ଚାପ୍ ଠିଆ



ହୋଇଛି। ତାକୁ ଆଗ ନ ଦେଇ ଅନ୍ୟମାନଙ୍କୁ ଦେବାରେ ଲାଗିଛ!''

ସୁଜିତ୍ ତାଙ୍କରି ଆଡ଼କୁ ଟିକେ ଚାହିଁଲା। ତା' ଆଖି ସହ ସେ ଧନୀ ଲୋକର ଆଖିଟି ମିଳିଲା। ଧନୀ ଲୋକର ହୃଦୟ ଦୟାରେ ଆହୁରି ବିଗଳିତ ହୋଇଉଠିଲା। ସେ ନିଜେ ଉଠିଆସିଲେ। ଦେଖିଲେ ସବୁ ପ୍ରାୟ ଶେଷ। ସେ ଲୁଗାଗୁଡ଼ିକ ମଧ୍ୟରୁ ଗୋଟିଏ ମେଞ୍ଚା ହୋଇ ଲୁଗା ପଡ଼ିଥିଲା। ସେହି ଗୁଡ଼ାଗୁଡ଼ି ହୋଇଥିବା ଲୁଗାମେଞ୍ଚାକ ବଢ଼ାଇଦେଲେ ସୁଜିତ୍ ହାତକୁ। ତା' ସଙ୍ଗେ ସଙ୍ଗେ ଆଉ ଜଣେ ଦୁଇପଟ ପୋଡ଼ାରୁଟି ଦେଇ କହିଲେ-- ହୁଣ୍ଡା ପିଲା! ନେ ଏଇ ଶେଷରୁଟି ଦୁଇ ପଟ, ସେ ତୋ ଭାଗ୍ୟ।

ଏଥିରେ ସୁଜିତ୍ କହିଉଠିଲା-- ହଁ ବାବୁ ଠିକ୍ କହିଛ! ଭାଗ୍ୟ ହେଉଛି ଭଗବାନ୍। ସେ ଆଜି ମୋ ପାଇଁ ଯାହା ରଖିଛନ୍ତି, ସେହି ହିଁ ମୋର ଯଥେଷ୍ଟ।

ଚାହିଁ ରହିଥିଲେ ଆଶ୍ଚର୍ଯ୍ୟ ଭାବରେ ତା'ରି ମୁହଁକୁ ସମସ୍ତେ। ଏତେ ଟିକିଏ ପିଲା କ'ଣ ନ କହିଲା ସତେ !

ସୁଜିତ୍ ଘରକୁ ଫେରିଲା। ଘରେ ମା'ଙ୍କୁ ଦେଲା। ମା' ଭାବିଲେ, ସୁଜିତ୍ ନିଶ୍ଚେ ଆଜି ଲୁଗାରେ କ'ଣ ଗୁଡ଼ାଇ ଆଣିଛି ଖାଇବା ପାଇଁ। ସେ ଅତି ଆଗ୍ରହ ଓ ଆଶା ନେଇ ଖୋଲିଦେଲେ ଲୁଗା ପୁଡ଼ିଆଟି। ଖୋଲିଦେଇ ସେ ଯାହା ଦେଖିଲେ, ସେଥିରେ ତାଙ୍କର ଆଖି ଖୋସି ହୋଇଗଲା। ଲୁଗାପୁଡ଼ାରୁ ଖସିପଡ଼ିଲା କେତେକ ସୁନାର ଅଳଙ୍କାର ଆଉ ଟଙ୍କାବିଡ଼ା। ସେ ଭାବିଲେ ସୁଜିତ୍ ନିଶ୍ଚୟ କାହାଠାରୁ ଚୋରାଇ ଆଣିଛି। ଭୋକ ସାଙ୍ଗକୁ ରାଗ, ସୁଜିତ୍ ମା'ଙ୍କ ମୁଣ୍ଡକୁ ବିବ୍ରତ କରିଦେଲା। ରାଗରେ ପାଟିକରି ଡାକିଲେ ସୁଜିତ୍‌କୁ।

ମା'ଙ୍କର ଏପରି ଚଡ଼ାଗଲା ଶୁଣି ସୁଜିତ୍ ବାହାରୁ ଦଉଡ଼ି ଆସିଲା କ'ଣ ହେଲା ବୋଲି। ମା'ଙ୍କ ପାଖରୁ ସବୁ କଥା ଶୁଣି ସେ ମଧ୍ୟ କାଠ ପାଲଟିଗଲା। ମା' କହିଲେ, "ଯା'କୁ ନେଇ ଯାହାଠାରୁ ଆଣିଥିଲୁ, ଫେରାଇ ଦେଇ ଆ'। ନ ହେଲେ ମୋ ଘରେ ଆଉ ତୋର ସ୍ଥାନ ନାହିଁ।'' ସୁଜିତ୍ ମା'ଙ୍କ କଥାକୁ ସେ ନିଜ ଭିତରେ ଅନୁଭବ କଲା, ହେଲେ କ'ଣ କରିବ। ସେ ବାବୁମାନେ ଯଦି ଚାଲିଯାଇଥିବେ ! ତଥାପି ସେ ବ୍ୟସ୍ତ ହୋଇ ଧାଇଁଲା ତାଙ୍କରି ଆଡ଼େ।

ଯାଇ ଦେଖେ ତ ସେମାନେ ସେଠାରେ ଆଉ ନାହାନ୍ତି। ଲୋକଙ୍କଠାରୁ ଶୁଣିବାକୁ ପାଇଲା ଯେ ସେମାନେ ପାଖ ଗାଁ'କୁ ଯାଇଛନ୍ତି। ସେ ଗାଁ'କୁ ଅଣନିଶ୍ୱାସୀ ହୋଇ ଧାଇଁଲା।

ସେଠାରେ ଯାଇ ପହଞ୍ଚି ଦେଖେ ତ ସେମାନେ ଗୋଟିଏ ଗାଡ଼ିରେ ବସି ଯିବାକୁ ବାହାରୁଛନ୍ତି। ପାଟି କରି ଡାକି ଡାକି ଦଉଡ଼ିଲା। ସେ ଭଦ୍ରଲୋକ ଚାହିଁ ଦେଖିଲେ, ସେ ପିଲାଟି ତାଙ୍କରି ଆଡ଼େ ଦଉଡ଼ି ଦଉଡ଼ି ଆସୁଛି। ଗାଡ଼ି ରଖି ଚାହିଁରହିଲେ ତା'ରି ଆଡ଼କୁ।

ସୁଜିତ୍ ତାଙ୍କରି ଆଗରେ ଆସି ଠିଆହେଲା। ଘନ ଘନ ନିଃଶ୍ୱାସ ପ୍ରଶ୍ୱାସରେ ଛାତି ଉଠୁପଡ଼ ହେଉଥାଏ।

ସେ ଭଦ୍ରଲୋକ ଚାହିଁ ଦେଖିଲେ ପିଲାଟି କାଖରେ ଜକା ହୋଇଥଲା ତାଙ୍କରିଠାରୁ ନେଇଥିବା ଲୁଗାମେଞ୍ଚାଟି। ସେ କହିଲେ, "କ'ଣରେ ବାପା ?''

''ଆପଣ ମୋତେ ଭୁଲ୍‌ରେ ଅନେକ ଜିନିଷ ଦେଇଛନ୍ତି। କେବଳ ଆପଣ ମୋତେ ରୁଟି ଓ ଲୁଗା ଦେଇଥିଲେ; କିନ୍ତୁ ତା' ଭିତରୁ ମୁଁ ଅନ୍ୟ ଜିନିଷ ପାଇ ଆପଣଙ୍କୁ ଫେରାଇବା ପାଇଁ ଆଣିଛି।''

ଏହାର ଅର୍ଥ ଧନୀ ଲୋକଟି କିଛି ବୁଝିପାରିଲେ ନାହିଁ। ତାଙ୍କର ହାତକୁ ଗୁଡ଼ାଗୁଡ଼ି ହୋଇଥିବା ଲୁଗାଟି ସୁଜିତ୍ ବଢ଼ାଇଦେଲା। ଲୁଗାପୁଡ଼ାଟି ହାତରେ ଧରି କ'ଣ ବୋଲି ପଚାରି ବସିଲେ, ଧନୀଲୋକ ଜଣକ।

ସୁଜିତ୍ କହିଲା -- ଲୁଗା ଭିତରେ ଯାହା ଅଛି, ତାହା ଆପଣଙ୍କର, ମୁଁ କେବଳ ସେ ଲୁଗାଖଣ୍ଡିକର ଅଧିକାରୀ।

କୌତୂହଳରେ ସେ ଲୁଗାଟି ଫିଟାଇ ପକାଇଲେ। ଯାହା ଦେଖିଲେ, ସେଥିରେ ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ। ସୁଜିତ୍ ମୁହଁକୁ ଚାହିଁ ସେ ଯେପରି ଏକ ପରମ ଜ୍ୟୋତିର ଆଭାସ ପାଉଥିଲେ।

କିଛି ସମୟ ନୀରବରେ କାଟି ସେ କହିଉଠିଲେ--ଦେଖ, ଏହା ମଧ୍ୟ ମୋର ନୁହେଁ। ଏହା ତୁମର ଭାଗ୍ୟ। ଏ ଟଙ୍କା ଆଉ ସୁନାର ଅଧିକାରୀ ମୁଁ ନୁହେଁ, ତୁମେ। ତୁମର ସାଧୁତା ଦେଖି ମୁଁ ଆଜି ଭାରି ଖୁସି।

ଏହା କହି ସୁଜିତ୍‌କୁ ନିଜ ଗାଡ଼ିରେ ବସାଇ ତାଙ୍କ ଘରକୁ ନେଲେ। ମା'ଙ୍କୁ ତା'ର ସବୁ ବୁଝାଇ କହିଲେ--ତୁମେ ସୁଜିତ୍ ପରି ପୁଅର ମା'। ତା'ଭଳି ଧନକୁ ପାଇ ତୁମର ଆଉ କେଉଁ ଧନକୁ ଆଶା କରୁଛ ! ସେ ହିଁ ତୁମର ଧନ। ତା'ର ପାଠ ପାଇଁ ଏ ଟଙ୍କା, ଏ ସୁନା ଲୋଡ଼ା। ଆଜିଠାରୁ ତୁମର ଯାହା ଦରକାର, ସବୁ ମୁଁ ଦେବି।

ସେହିଦିନରୁ ତା'ର ଭାଗ୍ୟର ପରିବର୍ତ୍ତନ ହେଲା। ସୁଜିତ୍ ସଂସାରରେ ଖାଲି ସାଧୁ, ସତ୍ ଚରିତ୍ରର ପିଲା ହିସାବରେ ରହିଲା ନାହିଁ, ମହତ୍ ଲୋକ ହିସାବରେ ସମାଜରେ ପ୍ରତିଷ୍ଠା ଲାଭ କଲା।

*କନିକାରୋଡ଼, କଟକ*






ଶ୍ରୀ ପ୍ରଦୀପ କୁମାର ଦାଶ

୧। ମଣିଷ ସାଧାରଣତଃ ୧୧ ଦିନ ପାଣି ନ ପିଇ ବଂଚିପାରେ।

୨। ମୂଷା କେବେ ପାଣି ପିଏନାହିଁ।

୩। ଦାନ୍ତଘସା ବ୍ରସ ପ୍ରଥମେ ୧୯୪୮ ମସିହାରେ ଚୀନ୍ ଦେଶରେ ବ୍ୟବହୃତ ହୋଇଥିଲା।

୪। ଗଣେଶଙ୍କ ହାତରେ ଲଡ଼ୁ ଧରିବା ଅର୍ଥ--'ବିଶ୍ୱ ଏକତା'କୁ ବୁଝାଏ ।

୫। ୧୮ଟି ପୁରାଣ ଭିତରେ ସର୍ବ ପୁରାତନ ପୁରାଣର ନାମ-- ମତ୍ସ୍ୟ ପୁରାଣ ।

୬। ପୃଥିବୀରେ ୯୦ ପ୍ରକାର ମାଛରଂକା ପକ୍ଷୀ ଦେଖାଯାଆନ୍ତି।

୭। ଛାଉଣୀ ଶବ୍ଦରୁ ଛଉ ନୃତ୍ୟର ନାମକରଣ କରାଯାଇଛି।

୮। ଘୁମୁରା ବାଦ୍ୟଯନ୍ତ୍ରରେ ଗୋଧିଚମଡ଼ା ଘେରା ଯାଇଥାଏ ।

୯। ଓଡ଼ିଶାର ଜାତୀୟ କ୍ରୀଡ଼ାର ନାମ କବାଡ଼ି।

୧୦। ବିଦ୍ୟୁତ ଯୋଗେ ଚାଲୁଥିବା ଭାରତର ପ୍ରଥମ କାର୍‌ର ନାମ-- ରେୱା ।

*ହରିଶଂକର ରୋଡ୍, ବଲାଙ୍ଗିର*



# କୁଆଡ଼େ ଗଲାଣି ସେଦିନ କାଳ

ପ୍ରଣିତାରାଣୀ ବେହେରା

ଥିଲି ଯେତେବେଳେ ସାନ ପିଲାଟେ ମୁଁ
ଘରକୁ ଆସିଲା ବିଜୁଳିବତି
ଡିବିରି ଚେମିଣି, ହାରିକିନି ଠାରୁ
ଆଲୁଅ ଲାଗିଲା ଉଜ୍ଜ୍ୱଳ ଅତି ।







ସତେ କି ଖସିଛି ସରଗୁ ତାରା
ଦେଖୁଥିଲେ ଲୋକେ ସେମିତି ପରା
କାହୁଁ କାହୁଁ ଆସି ଜମିଲେ ତା' ପାଖେ
ପୋକ ଓ ଝିଣ୍ଟିକା, କଳିକତରା ।
ଲିଭିଲାନି ସିଏ ପବନ ବହିଲେ
ମାଟିତେଲ ତାକୁ ହେଲାନି ଲୋଡ଼ା
କେଡ଼ିକି ଆଶ୍ଚର୍ଯ୍ୟ ଜିନିଷଟି ଇଏ
କେଉଁଠୁ ଆସିଲା, କିଏ ସେ କଲା ?

ଧୋବି ଦେଇ ଆମ ଘରେ ଆସି ବସେ
ମାଗିଦେଲା ଥରେ ବିଜୁଳିବତି
ହାରିକିନି ଆଜି ଆଣିନି ସାଙ୍ଗରେ
ଅନ୍ଧାର ରାତିରେ ଯିବି କେମିତି ?
ବାପାଙ୍କ ପିଉସୀ ସାରିଆନାନୀ
ରାଗରେ ହୋଇଲା ସେ ଖିନିଖିନି
କେଡ଼େ ସାହସ ଏ ଧୋବିଟାର ଦେଖ
ଯିବ ତା'ଘରକୁ ବତିଟି ଘିନି !
ଆମେ ହସିଥିଲୁ ଫେଁ କି ଫାଁ
ଦୁହେଁ ବୁଝନ୍ତିନି କଥାଟା ଯାହା
କେଡ଼େ ନିରିମାୟା ମଣିଷ ସେମାନେ
ମନରେ ଯାହା ଆସେ କହନ୍ତି ତାହା ।
କୁଆଡ଼େ ଗଲାଣି ସେ ଦିନ କାଳ
କେଡ଼େ ଦ୍ରୁତ ହୋଇ ଧାଉଁଛି ବେଳ
ଗାଁ ଓ ସହର ହେଲା ସମାନ
ଦେଖାଏ ବିଜ୍ଞାନ ତା' ଯାଦୁଖେଳ ।
ଆମ ଟିକିଛୁଆ କେଡ଼େ ଚତୁର
କଅଣ ଅଜଣା କି ତାଙ୍କୁ ଦୂର
ସବୁ ଆଜି ତାଙ୍କ ହାତର ଖେଳ
କରୁଛି ବିଜ୍ଞାନ ଜୟଜୟକାର

*ମାର୍ଫତ୍- ଡ. ସନ୍ତୋଷ କୁମାର ବେହେରା, ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ ପରିସର, ଜଗତସିଂହପୁର*

ଭଲ ଇଂରାଜୀ କହିବାରେ ବା ଦାମୀ ପୋଷାକରେ କିମ୍ବା ଧନାଢ୍ୟ ଜୀବନଶୈଳୀରେ ଜୀବନର ମାନ ନ ଥାଏ ।

ଏହା ତମ ନାଁ ଶୁଣିଲେ ହସ ଫୁଟୁଥିବା ଲୋକଙ୍କ ସଂଖ୍ୟାରୁ ହିଁ ଜଣାପଡ଼େ ।

# ପାଣି ଉପରେ ଚାଲୁଥିବା ପକ୍ଷୀ

ଡ. ସୁଦର୍ଶନ ପଟ୍ଟନାୟକ

ଏହା ଏକ ସାମୁଦ୍ରିକ ପକ୍ଷୀ । ଝଡ଼ ସମୟରେ ପ୍ରାୟ ସବୁ ପକ୍ଷୀ ନିଜ ନୀଡ଼କୁ ଫେରି ଯାଉଥିଲାବେଳେ ଏହି ପକ୍ଷୀମାନେ ସମୁଦ୍ର ଉପରିଭାଗରେ ଉଡ଼ି ବୁଲୁଥାନ୍ତି। ଲାଗେ, ସତେଯେପରି ପ୍ରକୃତିର ଏ ପ୍ରକାର କ୍ରୋଧ ସହ ଏହି ପକ୍ଷୀ ଏକପ୍ରକାର ବୁଝାମଣା କରିଥାଏ ଓ ସମୁଦ୍ରର ନୀଳତରଙ୍ଗ ସହ ତା'ର ବନ୍ଧୁତା ଭୁଲିବାକୁ ଚାହେଁନି। ଏଣୁ ଏହା ଏକ ଅସାଧାରଣ ପକ୍ଷୀ। କୁହାଯାଏ, ଏ ପକ୍ଷୀର ନାମ 'ଧର୍ମଯାଜକ' ସେଣ୍ଟ୍ ପିଟରଙ୍କ ନାମାନୁକରଣରେ ଗ୍ରହଣ କରାଯାଇଛି। କାରଣ ଉଭୟ ଜଳ ଉପରେ ଚାଲିବାର କ୍ଷମତା ଧାରଣ କରନ୍ତି। ସେଣ୍ଟ୍ ପିଟର ହୁଏତ ଆଧ୍ୟାତ୍ମିକ ସାଧନା ବଳରେ ଦୀର୍ଘ ଦିନର ସିଦ୍ଧି ଯୋଗୁ ପାଣି ଉପରେ ଚାଲିପାରୁଥିଲେ। ମାତ୍ର ପ୍ରକୃତିର ବୈଚିତ୍ର୍ୟରେ ଅନ୍ୟତମ ଏହି ପକ୍ଷୀ ଜଳ ଉପରେ ଚାଲିପାରେ। ଏହାକୁ 'ପେଟ୍ରିଲ' ପକ୍ଷୀ ମଧ୍ୟ କୁହାଯାଏ ।

ଅବଶ୍ୟ ଏଭଳି କାର୍ଯ୍ୟ ପାଇଁ ପ୍ରକୃତି ଏ ପକ୍ଷୀକୁ କିଛି ସାଧନ ଯୋଗାଇଛି। ଏହାର ପାଦଦୁଇଟିରେ ଥିବା ଅଙ୍ଗୁଳଗୁଡ଼ିକ ମଧ୍ୟ ପରଦା (web) ଦ୍ୱାରା ସଂଯୁକ୍ତ ହୋଇଥିବା ଫଳରେ ଏହି ପକ୍ଷୀ ଜଳ ଉପରେ ବୁଡ଼ି ନ ଯାଇ ରହିପାରିବା ପାଇଁ କ୍ଷମ ହୁଏ।

ପେଟ୍ରିଲର ସମଗ୍ର ଜୀବନ ସମୁଦ୍ର ଜଳ ଉପରେ ହିଁ ବ୍ୟତୀତ ହୋଇଥାଏ। କେବଳ ଅଣ୍ଡା ଦେବାପାଇଁ ସେ ସ୍ଥଳଭାଗକୁ ଆସିଥାଏ; ନଚେତ୍ ଜଳର ତରଙ୍ଗ ଉପର ଅବା ସମୁଦ୍ର ଉପରିଭାଗରେ ଉଡ଼ି ବୁଲେ। ସମୁଦ୍ରରେ ଯାତ୍ରା କରୁଥିବା ଖୋଲା ଜାହାଜର ଯାତ୍ରୀମାନଙ୍କ ଶିରର ଉପରିଭାଗରେ ଏମାନେ ଘୂରିବୁଲନ୍ତି। ସେମାନଙ୍କ ରାବ ସହ ଘୂରି ବୁଲିବାକୁ ଦେଖିଲେ ଲାଗେ, ସତେଯେପରି ସେମାନେ କିଛି ଖାଦ୍ୟ ଯାତ୍ରୀମାନଙ୍କଠାରୁ ଆଶା କରୁଥା'ନ୍ତି। ଜାହାଜଟି ଚାଲିଗଲା ପରେ ତତ୍‌ଜନିତ ଉତ୍ତାଳ ତରଙ୍ଗର ଶିଖରରେ ହିଁ ପାଦ ଥାପି ବସି ରହନ୍ତି ଓ ତରଙ୍ଗର ଗତି ସହ ଏମାନେ ଜଳ ଉପରେ ଚାଲିଲା ଭଳି ପ୍ରତୀୟମାନ ହେଉଥାଆନ୍ତି। ଯଦି ଝଡ଼ ଆସେ, ସେମାନେ ଜଳର ଉପରିଭାଗ ଆକାଶରେ ଉଡ଼ିବୁଲନ୍ତି। କାରଣ ଝଡ଼ବେଳେ ଆନ୍ଦୋଳିତ ଅଶାନ୍ତ ସମୁଦ୍ରଜଳରେ ରହିବା ସେମାନଙ୍କ ପାଇଁ ସମ୍ଭବ ହୁଏ ନାହିଁ; ମାତ୍ର କସ୍ମିନ୍‌କାଳେ ସେମାନେ



ସ୍ଥଳ ଉପରେ ସେମାନଙ୍କ ନୀଡ଼କୁ ଫେରିଯାଆନ୍ତି ନାହିଁ। ଝଡ଼ ଶେଷ ହେଲାଯାଏ ସେହିଭଳି ଘୂରିବୁଲନ୍ତି ସମୁଦ୍ର ଉପର ଆକାଶରେ। ଝଡ଼ ଯଦି ଲାଗି ରହେ, ସେମାନେ ରାତିଦିନ ବରଂ ବାୟୁମଣ୍ଡଳରେ ଉଡ଼ି କଟାଇବାକୁ ଏକପ୍ରକାର ବାଧ୍ୟ ହୁଅନ୍ତି । ସତରେ ଆଶ୍ଚର୍ଯ୍ୟ ସେମାନଙ୍କର ବ୍ୟବହାର !

ପେଟ୍ରିଲ, ଆକାରରେ ଅତି ଛୋଟ। ପ୍ରାୟ ଗୋଟିଏ ଘରଚଟିଆ ପକ୍ଷୀ ପରି ହୋଇଥାଏ। ଏହାର ରଙ୍ଗ ଧୂସରିଆ କଳା। ଏହା ପଛ ପିଚା ପାଖରେ ଧଳା ପଟି ଥାଏ। ଏହାର ହାରାହାରି ଲମ୍ବ ସାତ ଇଞ୍ଚ ଥିଲାବେଳେ ଥଣ୍ଟଟି ଛୋଟ। ଗୋଡ଼ଦୁଇଟି ସରୁ ସରୁ ଓ ଆଙ୍ଗୁଳିଗୁଡ଼ିକ ପରଦା ସହ ସଂଯୁକ୍ତ।

ଏମାନଙ୍କ ରାବ ଶ୍ରୁତିକଟୁ ନୁହେଁ। ବରଂ ଏମାନେ ଜଳଯାତ୍ରୀଙ୍କ ମୁଣ୍ଡ ଉପରେ ଘୂରିବୁଲିବା ସମୟରେ ସେମାନଙ୍କୁ ନିଜ ଶବ୍ଦ ଦ୍ୱାରା ଆମୋଦିତ କରିଥାଆନ୍ତି। ହେଲେ ଏମାନେ ଗୀତ ଗାଇବା ପକ୍ଷୀ ନୁହନ୍ତି । ସ୍ଥଳଭାଗକୁ ଆସି ଖାତ ଅବା ଗର୍ତ୍ତ (burrows) ରେ ଅଣ୍ଡା ଦେବାପାଇଁ ଏମାନେ ନୀଡ଼ ନିର୍ମାଣ କରିଥାଆନ୍ତି। ଏହି ପକ୍ଷୀ ଅଣ୍ଡାଦେବା ସମୟରେ ସମ୍ପୂର୍ଣ୍ଣଭାବେ ଅଦୃଶ୍ୟ ହୋଇ ରହିବାକୁ ପସନ୍ଦ କରେ। ଏପରିକି ଶହ ଶହ ପକ୍ଷୀ ଗୋଟିଏ ସ୍ଥାନରେ ଏକତ୍ର ହେଉଥଲେ ମଧ୍ୟ ଦୃଶ୍ୟମାନ ହୁଅନ୍ତି ନାହିଁ।

ଆହୁରି ମଧ୍ୟ ଅନେକ ପ୍ରକାରର ପେଟ୍ରିଲ୍ ଅଛନ୍ତି ବୋଲି ବର୍ଣ୍ଣନା ଅଛି। ପରିସଂଖ୍ୟାନରୁ ଜଣାଯାଏ ଯେ ପାଖାପାଖି ଅଶି ପ୍ରଜାତିର ପେଟ୍ରିଲ୍ ପୃଥିବୀର ସମସ୍ତ ସମୁଦ୍ର ଉପରେ ଦେଖାଯାଇଥାଆନ୍ତି, ବିଶେଷଭାବେ ଦକ୍ଷିଣ ସାଗରୀୟ ଅଞ୍ଚଳରେ।

ଆକାରରେ ସବୁଠାରୁ ବଡ଼ ପେଟ୍ରିଲ୍‌କୁ 'ଜାଏଣ୍ଟ ପେଟ୍ରିଲ' (giant petrel) କୁହାଯାଏ। ଏହାର ଲମ୍ବ ପାଖାପାଖି ୩୫ ଇଞ୍ଚ, ସାଧାରଣ ପେଟ୍ରିଲର ପ୍ରାୟ ପାଞ୍ଚଗୁଣ ଅଧିକ। ଅନ୍ୟ ଏକ ପେଟ୍ରିଲକୁ ଡାଇଭିଙ୍ଗ୍ ପେଟ୍ରିଲ୍ (diving petrel) କୁହାଯାଏ। ଏମାନେ ସାଧାରଣତଃ ସାତରୁ ଦଶ ଇଞ୍ଚ ଯାଏ ଲମ୍ବା ହେଇଥାଆନ୍ତି।

ସମସ୍ତ ପେଟ୍ରିଲ୍, ଟ୍ୟୁବିନେୟାରସ୍ (Tubinaress) ପ୍ରଜାତିର ଅନ୍ତର୍ଭୁକ୍ତ । କାରଣ ସେମାନଙ୍କର ନାକପୁଡ଼ାଗୁଡ଼ିକ ନଳୀ ଆକାରରେ ହୋଇଥାଏ।

*ପ୍ଲଟ୍ ନଂ.- ୧୫୦୪, ମହାନଦୀ ବିହାର, କଟକ- ୪*

---



ବିଚାରପତି ଏକ ଚୋରି ମାମଲାରେ ବିଚାର କରୁଥିବା ବେଳେ କାଠଗଡ଼ାରେ ଠିଆ ହୋଇଥିବା ଚୋରକୁ ପଚାରିଲେ- ତୁମେ ଚୋରି କଲାବେଳେ କେବେ ନିଜ ସ୍ତ୍ରୀ ଓ ପିଲାଛୁଆଙ୍କ କଥା ଭାବିଛ ?

ଚୋର- ଭାବିଥିଲି ହଜୁର, ହେଲେ ସେ ଦୋକାନରେ କେବଳ ପୁରୁଷଙ୍କର ପୋଷାକ ଥିଲା ।

✤ ✤ ✤

ଯୁବତୀ- (ଜେଜୀଙ୍କୁ) ମୁଁ ଆଉ କଲେଜ ଯିବିନି ।

ଜେଜୀ- କାହିଁକି ଯିବୁନି ?

ଯୁବତୀ- ରାସ୍ତାରେ ଗୋଟେ ପୁଅ ମୋତେ ହଇରାଣ କରୁଛି।

ଜେଜୀ- ପେଖନା କାଢ଼ନା । କାଇଁ ମୁଁ ତ ସବୁଦିନେ ସେଇବାଟେ ମନ୍ଦିର ଯାଉଛି । ମୋତେ କେହି ଆଜିଯାଏ ହଇରାଣ କରିନାହାନ୍ତି !

# ଅତିଥି

ଶାନ୍ତି ସାମଲ

ରାଜାଙ୍କ ଉଆସରେ ଛାରପୋକଟିଏ ତା'ର ବନ୍ଧୁବାନ୍ଧବ, ପୁଅନାତିମାନଙ୍କୁ ନେଇ ରହୁଥିଲା । ରାଜାଙ୍କ ଶୋଇବାଘରେ ତାଙ୍କର ନରମ ଶେଯତଳେ ଛାରପୋକଟି ତା'ର ସଂସାର ପାତିଥିଲା । ରାଜା ଶୋଇଗଲା ପରେ ଛାରପୋକ ତାର ପରିବାର ସହ ରାଜାଙ୍କ ରକ୍ତକୁ ଖୁବ୍ ଖୁସିରେ ଖାଉଥିଲା । ଏପରି ଭାବରେ ଛାରପୋକର ସୁଖର ସଂସାର ବଢ଼ି ଚାଲିଥିଲା ।

ଦିନେ ଗୋଟିଏ ମଶା ଉଡ଼ିକରି ରାଜାଙ୍କ ଶୋଇବା ଘରକୁ ପଶିଆସିଲା । ସେ ରାଜାଙ୍କ ନରମ ଶେଯକୁ ଦେଖି ବହୁତ ଖୁସି ହୋଇଗଲା । ତାର ଭଁ ଭଁ ଶବ୍ଦରେ ଘରର ଏ କୋଣରୁ ସେ କୋଣ ଯାଏଁ ଘୂରିବୁଲୁଥାଏ । କେତେବେଳେ କେମିତି ଶେଯ ଉପରେ ବସିଯାଉଥାଏ । ଛାରପୋକ ଆଶ୍ଚର୍ଯ୍ୟ ହୋଇ ତାକୁ ପଚାରିଲା, "ତୁମେ କିଏ ? ତମର ଏଠି କ'ଣ କାମ ?" ମଶାଟି ନିଜର ପରିଚୟ ଦେଇ କହିଲା, "ମୁଁ ତମର ଅତିଥି । ମୋ ନାଁ ମଶା । ଆଜି ରାତିଟା ମୁଁ ଏଠାରେ କଟାଇବା ପାଇଁ ଚାହୁଁଛି ।" ଛାରପୋକ କହିଲା, "ଏଇଟା ରାଜାଙ୍କ ଶୋଇବାଘର । ତାଙ୍କ ନରମ ବିଛଣାରେ ତମେ ବସିପାରିବନି ।" ମଶା ଏଥରକ ବହୁତ ବିନୀତ ଭାବରେ କହିଲା, "ମହାଶୟ, ମୋତେ ଆଜି ରାତିଟା ଏଠାରେ ରହିବାକୁ ଦିଅନ୍ତୁ । ମୁଁ ବୁଲିବୁଲି ଅନେକଙ୍କର ରକ୍ତ ଖାଇଛି; କିନ୍ତୁ ରାଜାଙ୍କର ରକ୍ତ କେବେ ଖାଇନି । ରାଜାଙ୍କ ରକ୍ତ ନିଶ୍ଚୟ ଖୁବ୍ ମିଠା ହୋଇଥିବ । ମତେ ଆଜି ଥରକ ପାଇଁ ଅନ୍ତତଃ ସୁଯୋଗ ଦିଅନ୍ତୁ । ମୁଁ ଟିକେ ରାଜରକ୍ତର ସ୍ୱାଦ ଅନୁଭବ କରିବି ।"

ଛାରପୋକ କିନ୍ତୁ ମଶା ଉପରେ ବହୁତ ବିରକ୍ତ ହେଲା । କହିଲା, "ବିନା ନିମନ୍ତ୍ରଣରେ ମୋର ଅତିଥି ହୋଇଯାଉଛ । ତମେ ଯେତେବେଳେ ରାଜାଙ୍କୁ କାମୁଡ଼ିଦେବ, ରାଜା ହାତଗୋଡ଼ ଛାଟିବେ । ତାହାଦ୍ୱାରା ମୋର ପୁଅ, ଝିଅ, ନାତିନାତୁଣୀ କିଏ ବି ମରିଯାଇ ପାରନ୍ତି ।" ଏଥରକ ମଶା ଅତ୍ୟନ୍ତ କରୁଣ ଭାବରେ କହିଲା, "ତମେ ଯେପରି କହିବ, ମୁଁ ସେପରି କରିବି । ତମେମାନେ ପ୍ରତିଦିନ ରାଜାଙ୍କ ରକ୍ତ ଖାଉଛ । ତମେ ଭଲ ଭାବରେ ଜାଣିଥିବ କେତେବେଳେ, କେଉଁଠାରେ କାମୁଡ଼ିଲେ ରାଜାଙ୍କର ନିଦ ଭାଂଗିବନି । ମହାଶୟ୍ଯ ଅନୁଗ୍ରହପୂର୍ବକ ମୋତେ ଟିକେ ସବୁ ବୁଝାଇଦିଅନ୍ତୁ । ଆଜି ଥରେ ରାଜାଙ୍କ ରକ୍ତ ଚାଖିପାରିଲେ ମୁଁ ତମ ପାଖରେ ଚିର ଋଣୀ ହୋଇ ରହିବି ।"

ଛାରପୋକ ଶେଷରେ ବାଧ୍ୟ ହୋଇ କହିଲା, "ଠିକ୍ ଅଛି ମଶା, ରାଜା ଯେତେବେଳେ ଖାଇ ସାରି ଶୋଇବାକୁ ଆସିବେ ଓ ତାଙ୍କୁ ଗାଢ଼ ନିଦ ହୋଇଯିବ, ସେତେବେଳେ ତମେ ତାଙ୍କ ପାଦତଳେ କାମୁଡ଼ିବ । ରାଜା



ଜାଣିପାରିବେନି ସେତେବେଳେ ତମେ ତାଙ୍କ ରକ୍ତ ଚାଖି କରି ଉଡ଼ିକରି ଚାଲିଯିବ।" ମଶା ଛାରପୋକକୁ ଅନେକ ଧନ୍ୟବାଦ ଦେଇ ଘରର କଣରେ ଲୁଚିକରି ବସିଲା।



କିଛି ସମୟ ପରେ ରାଜା ରାତ୍ରୀ ଭୋଜନ ସାରି ଶୋଇବାକୁ ଆସିଲେ। ରାଜା ବିଛଣାରେ ଗଡୁଥାଆନ୍ତି। ମଶା ଆଉ ଅପେକ୍ଷା କରି ପାରୁ ନ ଥାଏ। ଆନନ୍ଦରେ ଦୁଇ ଚାରିଥର ଭଁ ଭଁ କରିନେଲା ଖଟ ଚାରି ପାଖରେ ଉଡ଼ି ଉଡ଼ି। ଏଇ ଖୁସିରେ ଛାରପୋକର କଥା ବି ଭୁଲିଗଲା ଯେ ରାଜା ଶୋଇଲା ପରେ ସେ ତାଙ୍କ ପାଖକୁ ଯିବ ଓ ପାଦତଳେ କାମୁଡ଼ିବ। ମନ ଆନନ୍ଦରେ ବୁଲି ବୁଲି ରାଜାଙ୍କ ପାଦ ଉପରେ ଥରେ କାମୁଡ଼ିଦେଲା। ରାଜାଙ୍କୁ ନିଦ ଲାଗି ଆସୁଥାଏ। ହଠାତ୍ ଭଁ ଭଁ ଶବ୍ଦ ଓ ମଶାର କାମୁଡ଼ାରେ ତାଙ୍କର ନିଦ ଭାଂଗିଗଲା। ସେ ତାଙ୍କର କର୍ମଚାରୀମାନଙ୍କୁ ଡାକିଲେ। ସେମାନେ ଆସି ବିଛଣା ଝଡ଼ାଝଡ଼ି କଲେ। ସେତେବେଳେକୁ ମଶା ଉଡ଼ି ଯାଇଥାଏ। ଛାରପୋକମାନେ ରାଜାଙ୍କ ରକ୍ତ ଖାଇବା ପାଇଁ ଚାରିଆଡ଼େ ଘୂରି ବୁଲୁଥାଆନ୍ତି। କର୍ମଚାରୀମାନେ ଖୋଜାଖୋଜି କରି ସମସ୍ତ ଛାରପୋକଙ୍କୁ ମାରିଦେଲେ। ସେଦିନ ରାଜାଙ୍କ ଖଟ ତଳୁ ଛାରପୋକ ବଂଶ ନିପାତ୍ ହୋଇଗଲେ। ଏଣୁ ଦେଖିଚାହିଁ ଅତିଥିଙ୍କୁ ଘରେ ସ୍ଥାନଦେବା ଉଚିତ।

*ଅରୁଣୋଦୟ ନଗର, କଟକ*

# ବାୟୁ ପ୍ରଦୂଷଣ

ଶ୍ରୀ ଚିତାରାମ ବ୍ରହ୍ମଚାରୀ

୧। ଓଡ଼ିଶାରେ ସବୁଠାରୁ ବାୟୁ ପ୍ରଦୂଷଣ ହେଉଥିବା ସ୍ଥାନର ନାମ କ'ଣ ?

୨। ଅମ୍ଳ ବର୍ଷା ପାଇଁ କେଉଁ ବିଷାକ୍ତ ଗ୍ୟାସ୍‌ଟି ଦାୟୀ ?

୩। ସବୁଠାରୁ ଅଧିକ ପରିମାଣରେ ଅଙ୍ଗାରକାମ୍ଳ ଗ୍ୟାସ୍ ଛାଡୁଥିବା ଦେଶର ନାଁ କ'ଣ ?

୪। ଅଙ୍ଗାରକାମ୍ଳ ଗ୍ୟାସ୍‌କୁ କମେଇବା ପାଇଁ ହୋଇଥିବା କ୍ୟୋଟୋ ପ୍ରୋଟୋକଲ କେଉଁଠାରେ ହୋଇଥିଲା ?

୫। ଇ.ଏସ୍.ପି. କ'ଣ ?

୬। ଭାରତରେ ପ୍ରଥମେ କେବେ ବାୟୁ ପ୍ରଦୂଷଣ ନିୟମ ବା ଏୟାର୍ ପଲ୍ୟୁସନ୍ ଆକ୍ଟ ଆରମ୍ଭ ହେଲା ?

୭। ପୃଥିବୀରେ ସୁବୁଠାରୁ ବାୟୁ ପ୍ରଦୂଷିତ ହେଉଥିବା ଦେଶର ନାମ କ'ଣ ?

୮। ବାୟୁକୁ ପ୍ରଦୂଷଣ କରୁଥିବା ପ୍ରଦୂଷିତ ପଦାର୍ଥକୁ କେତେ ଭାଗରେ ବିଭକ୍ତ କରାଯାଇଛି ?

୯। "ଭୋପାଳ ଗ୍ୟାସ୍ ଟ୍ରାଜେଡି" ଏକ ଭୟଙ୍କର ବିପର୍ଯ୍ୟୟ କେବେ ହୋଇଥିଲା ?

୧୦। ଭୋପାଳ ଗ୍ୟାସ ଟ୍ରାଜେଡି କେଉଁ ବିପର୍ଯ୍ୟୟ ଯୋଗୁଁ ହୋଇଥିଲା ?

*ଗଡ଼ସାହି, ବାଲିଆପାଳ, ଜିଲ୍ଲା, ବାଲେଶ୍ୱର- ୭୫୬୦୨୩*

(ଉତ୍ତର ୨୦ ପୃଷ୍ଠାରେ)

# ଦୀନେଶଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

୨୦୧୧ ମସିହା ଅଗଷ୍ଟ ୧୨ ମସିହା । ସେଦିନ ଦୀନେଶ ପ୍ରସାଦ ବର୍ନୱାଲ୍ ନିଜ ପରିବାର ସହ କୋଦର୍ମାରୁ ରାଞ୍ଚି ଆସୁଥିଲେ । କୋଦର୍ମା ହେଉଛି ତାଙ୍କ ନିଜ ଘର । ସେମାନେ ଆସୁଥିଲେ ଏକ ବସ୍‌ରେ । ବସ୍‌ଟି ଶିବାନୀ ନଦୀ ଉପରେ ଥିବା ପୋଲଦେଇ ଯିବା କଥା; କିନ୍ତୁ ପୋଲଟିରେ ଫାଟ ଦେଖାଦେବାରୁ ପୋଲର ମରାମତି କାମ ଚାଲିଥିଲା । ତେଣୁ ଏକ ଅସ୍ଥାୟୀ ବୁଲାଣି ରାସ୍ତାରେ ଯାଉଥାଏ ବସ୍ । ହେଲେ ସେଇ ବୁଲାଣି ରାସ୍ତା ଉପରେ ଝୁଲି ରହିଥିଲା ୧୧,୦୦୦ ଭୋଲ୍‌ଟର ବିଦ୍ୟୁତ ତାର । ଫଳରେ ହଜାରିବାଗ ଜିଲ୍ଲାର ଇଚକ୍‌ମୋର୍ ନାମକ ଜାଗାରେ ବସ୍‌ଟି ସେଇ ବିଦ୍ୟୁତ ତାର ସଂସ୍ପର୍ଶରେ ଆସିଗଲା । ବିଦ୍ୟୁତ ତାର ସଂସ୍ପର୍ଶରେ ଆସି ହଠାତ୍ ନିଆଁ ଧରିପକାଇଲା ବସ୍‌ରେ । ତା'ପରେ କଅଣ ହେଲା ?

ତା'ପରେ କଅଣ ହେଲା ଶୁଣନ୍ତୁ, ଦୀନେଶ ପ୍ରସାଦଙ୍କ ପୁଅ ବିଶାଲ କୁମାରଙ୍କ ତୁଣ୍ଡରୁ ।

''ବସ୍‌ରେ ନିଆଁ ଲାଗିଯିବାମାତ୍ରେ ବସ୍ ଭିତରେ ଥିବା ଯାତ୍ରୀମାନେ ସାହାଯ୍ୟ ପାଇବା ପାଇଁ ଜୋର୍‌ରେ ଚିତ୍କାର କରିବାରେ ଲାଗିଥା'ନ୍ତି । ଆଖପାଖର ଲୋକେ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଧାଇଁଗଲେ । ମୋ' ବାପା ଏହି ବିରାଟ ବିପଦରେ ଧୈର୍ଯ୍ୟ ନ ହରେଇ କୌଣସିମତେ ଜଳନ୍ତା ବସ୍‌ରୁ ଡେଇଁପଡ଼ିଲେ । ମୁଁ ଯେ ଭିତରେ ରହିଯାଇଛି, ଏ ବିଷୟରେ ତାଙ୍କ ହୋସ୍ ଆସିବାମାତ୍ରେ ସେ ବସ୍ ଭିତରକୁ ପଶିଯାଇ ଧୀରେ ଧୀରେ ମୋତେ ବାହାରକୁ ନେଇଆସିଲେ । ସେତେବେଳକୁ ମୋ' ବାଆଁ ଗୋଡ଼ରେ ନିଆଁ ଲାଗି ଫୋଟକା ବାହାରିପଡ଼ିଥାଏ ।

''ବାପା ମୋତେ ଭୂଇଁ ଉପରେ ଶୁଆଇଦେଇ ପୁଣି ପଶିଗଲେ ଜଳୁଥିବା ବସ୍ ଭିତରକୁ । ଉଦ୍ଧାର କରି ନେଇଆସିଲେ ଆଉ ଜଣେ ଯାତ୍ରୀଙ୍କୁ । ଥରଥର କରି ବସ୍ ଭିତରେ ପଶି ସେ ୧୫ ଜଣ ଯାତ୍ରୀଙ୍କୁ ନିଆଁ ଭିତରୁ ବାହାର କରି ସେମାନଙ୍କ ଜୀବନରକ୍ଷା କରିଦେଲେ ; କିନ୍ତୁ ଏଥରକ ଭାଗ୍ୟ ତାଙ୍କୁ ସହଯୋଗ କଲାନାହିଁ । ସେ ନିଜେ ବସ୍ ଭିତରେ ନିଆଁରେ ଅଟକିଯାଇ ଆଉ ବାହାରିପାରିଲେନି । ସେଇ ବସ୍ ଭିତରେ ହିଁ ନିଆଁ ତାଙ୍କ ଜୀଅନ୍ତା ଦେହଟାକୁ ଜାଳିପୋଡ଼ି ପାଉଁଶ କରିଦେଲା । ମୋ' ବାପାଙ୍କୁ କେତେବର୍ଷ ହୋଇଥିଲା ଜାଣନ୍ତି ? ତାଙ୍କୁ ହୋଇଥିଲା ଜମା ୩୦ ବର୍ଷ । ମୋର ସେଇ ପୋଡ଼ା ଘାଆ ଏବେ ବି ଶୁଖିନି । ମୁଁ ଏବେ ଡାଲଟନ୍‌ଗଞ୍ଜରେ ଥିବା ମୋ' ମାମୁଘରେ ରହି ଚିକିତ୍ସାରେ ଅଛି ।''

ଦୀନେଶ ପ୍ରସାଦଙ୍କ ଉପରେ ନିଆଁ ସିନା ଦୟା କଲାନାହିଁ; କିନ୍ତୁ ତାଙ୍କ ସ୍ମୃତି ଏବେ ବଞ୍ଚିରହିଛି ତାଙ୍କ ପରିବାରର ସଦସ୍ୟ, ପଡ଼ୋଶୀ ଏବଂ ଆତ୍ମୀୟମାନଙ୍କ ମନ ଭିତରେ ।

ରେଣୁଦେବୀ ହେଉଛନ୍ତି ଦୀନେଶଙ୍କ ପଡ଼ୋଶୀ । ତାଙ୍କୁ ମନେପକେଇ ରେଣୁଦେବୀ କହନ୍ତି, ''ଦୀନେଶ ଅନ୍ୟମାନଙ୍କୁ ସାହାଯ୍ୟ କରିବା ପାଇଁ ସଦା ତତ୍ପର । କୌଣସି ଲୋକଙ୍କୁ ସାହାଯ୍ୟ କରିବା ପାଇଁ ମନା କରୁଥିବାର ଗତ ଦଶବର୍ଷ ଭିତରେ ମୋ' ନଜରକୁ ଆସିନି । ଏପରିକି ଥରଟିଏ ବି ନୁହେଁ । ତାଙ୍କର ଆର୍ଥିକ


the lives of a doctor-couple. The
s bandaged Kamble's bleeding
while they were cooped in the
or more than six hours. Later,
e was rushed to the state-run JJ
al, where he succumbed to his
s after a few days.
mble's wife Shruti, 39, is yet to
o terms with his death but is
f her late husband's selflessness.

Kamble is a hero for his elde
son who has already de
cided to fulfill his father'
dream by joining th
armed forces. "He goe
around proudly sayin
my papa is brave," say
Shruti.
- Madhavi Rajadhyaksha

ow
amily
latives.
our in
a very
lecade I
ccasion
ncially
of any
rst one
k if it

ay Ojha

ଅବସ୍ଥା ବିଶେଷ ଭଲ ନୁହେଁ । ଏହାସତ୍ତ୍ୱେ ସମସ୍ତଙ୍କୁ ସାହାଯ୍ୟ କରିବା ନିମନ୍ତେ ସେ ସବୁବେଳେ ତିଆର୍ । ଆମ ପଡ଼ାରେ କାହାର କୌଣସି ବିପଦ ପଡ଼ିଲେ ଦୀନେଶବାବୁ ହିଁ ପ୍ରଥମ ବ୍ୟକ୍ତି, ଯିଏ ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ସବା ଆଗେ ତାଙ୍କ ପାଖରେ ପହଞ୍ଚିଯାଆନ୍ତି । ଅନ୍ୟ କାହାକୁ ସାହାଯ୍ୟ କରିବାରେ ନିଜ ଉପରେ ବିପଦର ଆଶଙ୍କା ଥିଲେ ମଧ୍ୟ ସେଥିରେ ସେ ପଛେଇଯିବାର୍ ଆମେ କେହି ଦେଖିନୁ । ସେ ଯେଉଁଠି ଥାଆନ୍ତୁ ପଛେ, ଭଲରେ ଥାଆନ୍ତୁ ବୋଲି ଆମେ ସମସ୍ତେ ଭଗବାନଙ୍କ ପାଖରେ ପ୍ରାର୍ଥନା କରୁଛୁ ।''

ହଁ, ନିଜ ଜୀବନକୁ ପାଣି ଛଡ଼େଇ ଅନ୍ୟମାନଙ୍କ ଜୀବନ ବଞ୍ଚେଇବା ଭଳି ବ୍ୟକ୍ତିମାନେ ସଂସାରରେ ଅଛନ୍ତି ସତ; କିନ୍ତୁ ସେମାନଙ୍କ ସଂଖ୍ୟା ବିରଳ । ଦୀନେଶ ପ୍ରସାଦ ଆମ୍ଭମାନଙ୍କର ଆଦର୍ଶ । ତାଙ୍କ ଜୀବନରୁ ଆମେ ପ୍ରେରଣା ଲାଭ କରିପାରିଲେ, ତାହା ହିଁ ହେବ ତାଙ୍କ ଉଦ୍ଦେଶ୍ୟରେ ଆମର ବାସ୍ତବ ତଥା ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

*'ଅଭୀପ୍‌ସା', ସେକ୍ଟର-୬, ପ୍ଲଟ୍ ନଂ-୧୧୩୧, ଅଭିନବ ବିଡ଼ାନାସୀ, କଟକ*

---

# ଅଛି–ନାହିଁ

ତଳେ ଦିଆଯାଇଥିବା ଦୁଇଟି ଚିତ୍ର ମଧ୍ୟରେ ଅତି କମ୍‌ରେ ୭ଟି ପ୍ରଭେଦ ଅଛି । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଖୋଜି ବାହାର କରନ୍ତୁ ତ ! (ଉତ୍ତର ୩୪ ପୃଷ୍ଠାରେ)





# ରାଜା ହେବ ଏମିତି

ଇଂ ନରେନ୍ ଚନ୍ଦ୍ର ଦାଶ

ଅନ୍ଧଟିଏ ବାଡ଼ି ଧରି
ରାଜରାସ୍ତାର ମଝିରେ ଚାଲିଛି
ବାଡ଼ି ଠୁକ୍ ଠୁକ୍ କରି ।
ପଛେ ଆସୁଥାନ୍ତି ରାଜା
ସମ୍ମୁଖେ ଥା'ନ୍ତି ଅମାତ୍ୟଗଣ
ସାଥେ ଥା'ନ୍ତି ବହୁ ପ୍ରଜା ।
ରାଜା ଯାତ୍ରାକୁ
ବାଧାହୀନ ହେବ ବୋଲି
କଟୁଆଳ ମଝି ରାସ୍ତା ପଥିକଙ୍କୁ
ରାସ୍ତାରୁ ଦିଅନ୍ତି ଠେଲି ।
କଟୁଆଳ କଟୁ କଥା
କହି ଯେବେ ଦେଲେ ଅନ୍ଧକୁ ଠେଲି
ଅନ୍ଧ ପାଏ ମନେ ବ୍ୟଥା ।
କଟୁଆଳ ଗଲେ ସେନାପତି ଆସି
ଦେଖିଲେ ଅନ୍ଧଟି ପୁଣି
ବାଡ଼ିଟିକୁ ଧରି ମଝି ରାସ୍ତାରେ
ଚାଲୁଅଛି ମନ ମାରି ।



ସେନାପତି ତାର ବାଡ଼ିଟିକୁ ହାତେ ଧରି
କହିଲେ ଅନ୍ଧ ରାସ୍ତାରୁ ହଟି ଯା'
ଜାଣିପାରୁନା କି
ରାଜା ଆସୁଛନ୍ତି ବୋଲି ?
ମନ୍ତ୍ରୀ ଦେଖିଲେ ଚାଲିଛି ଅନ୍ଧ
ରାସ୍ତା ମଝିକୁ ଆସି
ହାତ ଧରି ତାର କହିଲେ ହଟି ଯା'
ମଝିକୁ ଆସନା ଧସି !
ମନ୍ତ୍ରୀ ଗଲା ପରେ ସେଇ କଥା ପୁଣି ହେଲା
ରାସ୍ତା ମଝିରେ ଚାଲିଲା ଅନ୍ଧ
ବାଡ଼ି ଧରି ଚାଲୁଥିଲା ।
ପଛୁ ଦେଖୁଥିଲେ ଏଇ ଦୃଶ୍ୟ ରାଜା
ଗାଡ଼ିରୁ ଓହ୍ଲାଇପଡ଼ି,
କହିଲେ, "ଅନ୍ଧ ହେ କେଉଁଠିକି ଯିବ ?
ବସ ପଛେ ଅଛି ଗାଡ଼ି ।"
ଶୁଣି ରାଜାଙ୍କର ସହାନୁଭୂତିର ସ୍ୱର
ମୁଗ୍ଧ ହୋଇଲା ଅନ୍ଧ ବିଚରା
ବୋହିଗଲା ଲୁହଧାର ।
କହିଲା ଅନ୍ଧ, "ଦୃଷ୍ଟିହୀନ ମୁଁ
ସବୁ ଦିଶେ ଅନ୍ଧକାର
ଅନୁମାନ କରି କହୁଛି ଆପଣ
ହୋଇଥିବେ ନରବର ।"
ରାଜା ପଚାରିଲେ "କିପରି ଜାଣିଲ ଭଲା ?"
କହିଲା ଅନ୍ଧ "କର୍ମଚାରୀଙ୍କ
ଭାଷାରୁ ତା' ଜଣାଗଲା ।
ଛାମୁଙ୍କର ଏଇ କୋମଳ ମଧୁର କଥା
ଯେତେଦିନ ଥିବି ହୃଦୟରେ ମୋର
ରହିବ ହୋଇ ସାଇତା ।" ...

'ପ୍ରଣବାଳୟ', ୬୪୯, ମହାନଦୀ ବିହାର, କଟକ-୭୫୩୦୦୪

# କେନ୍ଦୁଝରର କଙ୍ଗାରୁ ଛୁଆ

ସୁଶ୍ରୀ ପ୍ରଜ୍ଞାସ୍ମିତା ମହାନ୍ତ



ବଣପାହାଡ଼ ଘେରା କେନ୍ଦୁଝର। ଏଠାରେ ଅନେକ ମନଛୁଆଁ ଜାଗା ଅଛି। ତା'ଭିତରେ ମହାଦେବ ବ୍ରହ୍ମେଶ୍ୱରଙ୍କ ପୀଠ 'ଗୋନାସିକା' ଗୋଟିଏ। ମୁଁ ତୃତୀୟ ଶ୍ରେଣୀରେ ପଢୁଥାଏ। ଦିନେ ଜେଜେଙ୍କ ସହ ଗୋନାସିକା ଯାଇଥିଲି। ପାଦଚଲା ବାଟରେ ଆମ ଗାଁଠାରୁ ମାତ୍ର ୯ କି.ମି. ଦୂରରେ ଗୋନାସିକା। ଏବେ ପାହାଡ଼ କଟାଯାଇ ପିଚୁ ସଡ଼କ ହେଲାଣି। ନୂଆ ବାଟରେ ଘରଠାରୁ ଗୋନାସିକା ମନ୍ଦିରର ଦୂରତା ୧୫ କି.ମି। ବାଟ ସାରା ଖାଲି ବଣ-ପାହାଡ଼। ଗଛ ଡାଳରେ ମାଂକଡ଼ ସହିତ ଗୁଣ୍ଡୁଚିମୂଷାଙ୍କ ଧାଁ-ଦଉଡ଼। ରଂଗବେରଂଗର ଭଳିକି ଭଳି ବଣୁଆ ଚଢ଼େଇ ଦେଖିଲେ ମନ ଖୁସି ହୋଇଯାଏ।

ସବୁ ଚଢ଼େଇଙ୍କ ନାଁ ମୋତେ ଜଣାନାହିଁ। ହଳଦୀବସନ୍ତ, ଶୁଆ, କଜଳପାତି, କାଉ, ବଣି, କୁମ୍ଭାଟୁଆ ଆଦି ଚହଳ କରୁଥାଆନ୍ତି। ଗୋଧି, ନେଉଳ ତ ମାଳମାଳ। ସଂଜ ନଇଁଲେ ପଲପଲ ଭାଲୁ ଓ ବିଲୁଆ। ହାବୁଡ଼ରେ ପଡ଼ିଲେ କଥା ସରିଯାଏ। ଏହା ଭିତରେ ଝାଟିମାଟି ଛଟା କୁଡ଼ିଆ ଘରଗୁଡ଼ିକରେ ରହନ୍ତି ଅନେକ ଜୁଆଙ୍ଗ ଲୋକ। ଏମାନେ ଗରିବ, ନିର୍ଗ୍ରୀହ ହେଲେ ବି ଭାରି ସାହସୀ। ବଣୁଆ ଆଳୁ, କେନ୍ଦୁ, କାଳିକେନ୍ଦୁ, ଚାରିକୋଳି, ଝରଣି ଆମ୍ବ, ଗିଲିରି ଫୁଲ, ଜାଳକାଠ ଓ ଶାଳପତ୍ର ଠୁଳେଇବା ପାଇଁ ସକାଳ-ସଞ୍ଜରେ ବୁଲୁ ଥଆନ୍ତି। ମୁହଁ ସଞ୍ଜରୁ ଖିଆପିଆ, ରାତି ଯାଏଁ ଚାଙ୍ଗୁନାଟ କରନ୍ତି। ଚାଙ୍ଗୁବାଦ୍ୟର ଶବ୍ଦ ବାଘର ଗର୍ଜନଠାରୁ ମଧ୍ୟ ଅଧିକ। ଚାଙ୍ଗୁର ଶବ୍ଦରେ ବିଲୁଆ, ଭାଲୁ ଡରି ପଳାନ୍ତି। ଗାଆଁ ସୀମା ମାଡ଼ନ୍ତି ନାହିଁ।

ଗୋନାସିକା ପହାଡ଼ରୁ ବୈତରଣୀ ନଦୀ ବାହାରିଛି। କିଛି ଦୂର ବହିଯିବା ପରେ ଗୋଟିଏ ଜାଗାରେ ଲୁଚିଯାଇଛି। ଏହି ଜାଗାକୁ 'ଗୁପ୍ତଗଙ୍ଗା' କହନ୍ତି। ଏହାରି ପାଖରେ ଗୁପ୍ତଗଙ୍ଗା ବୋଲି ଜୁଆଙ୍ଗ ଗାଆଁଟିଏ ବି ଅଛି। ଏଇଠୁ ବୈତରଣୀର ଧାର ଲୁଚିଯାଇ ଦୁଇ କି.ମି ଦୂରରେ ଥିବା ମହାଦେବ ବ୍ରହ୍ମେଶ୍ୱରଙ୍କର ବ୍ରହ୍ମକୁଣ୍ଡ ଉପରେ ଥିବା ପଥର ଚଟାଣରେ କୂଳୁକୂଳୁ ହୋଇ ଝରିଯାଉଛି ।

ମନ ହେଲା, ବୈତରଣୀ ବାହାରିଥିବା ଜାଗାଟି ଦେଖିବା ପାଇଁ। ଏବେ ସେ ପର୍ଯ୍ୟନ୍ତ ପିଚୁ ସଡ଼କ ହୋଇଛି। ଜେଜେଙ୍କ ବାଇକ୍ ପଛରେ ବସି ବୈତରଣୀ ମୁଣ୍ଡରେ ପହଞ୍ଚିଲି। ଉଚା ଉଚା ସିମେଣ୍ଟ୍ ପାହାଚ ଚଢ଼ିବାବେଳେ ଧଇଁସଇଁ ହୋଇଯାଇଥାଏ। ପହଞ୍ଚି ଦେଖିଲି ଏଠାରେ ଗୁପ୍ତଗଙ୍ଗା ଦେବୀଙ୍କର ମୂର୍ତ୍ତି ପୂଜା ପାଉଛନ୍ତି। ପୂଜକ ବୁଝେଇଦେଲେ ଯେ ଏଇଠି ଆଗକାଳରେ ଗୋଟିଏ ଗୋରୁର କଟାମୁଣ୍ଡ ଥିଲା। ଗୋରୁ ମୁଣ୍ଡର ନାକପୁଡ଼ା ଦେଇ



ବାଲିମିଶା ପାଣି ଓ ଅନ୍ୟ ପୁଡ଼ାରେ କେବଳ ସଫା ପାଣି ବାହାରୁଥିଲା। ଏହା ପଛରେ ଗୋଟିଏ ଲୋକକଥା ବି ଅଛି।

ଗୋରୁ ଶବ୍ଦର ସଂସ୍କୃତ ଶବ୍ଦ 'ଗୋନାସିକା' ଅନୁଯାୟୀ ଏହି ପର୍ବତର ନାଆଁ ଗୋନାସିକା ହୋଇଛି। ଏବେ ଆଉ ତାହା ନାହିଁ। ପଥର ତିଆରି ଗୋରୁମୁଣ୍ଡଟିଏ ରଖାଯାଇଛି । ବୈତରଣୀ ବାହାରିଥିବା ଜାଗାରେ ଲଟେଇ ହୋଇ ରହିଛି ଗୋଟିଏ ବିରାଟ ଲତା ଆକୃତିର ଗଛ। ଏହାକୁ 'ଶିବଜଟା' କହନ୍ତି । ଶିବଙ୍କର ଏହି ଜଟାରେ ସୁରଗଙ୍ଗା ଅବତରଣ କରିଥିଲେ ବୋଲି ବିଶ୍ୱାସ କରାଯାଏ।

ଗୋନାସିକାର ବଣୁଆ ଦୃଶ୍ୟ ଦେଖିବାକୁ ଭାରି ମଜା ଲାଗୁଥାଏ। ମୁଁ ତ ଭୋକ-ଶୋଷ ପୂରା ଭୁଲିଯାଇଥାଏ। ଫେରିବାବେଳେ ବାଇକ୍ ଠିଆ କରି ଝରଣା କୂଳର ପଥର ଚଟାଣ ଉପରେ ଜେଜେଙ୍କ ସହିତ ବସିଥାଏ। ବାଟୋଇ ଯାଆ-ଆସ କରୁଥାନ୍ତି। ହଠାତ୍ ଜେଜେ କହି ଉଠିଲେ-- ଟୁଇଁକିଲ୍! ଦେଖ୍ ଦେଖ୍ କଙ୍ଗାରୁଛୁଆ ଦେଖ୍।"

ମୁଁ ଅବାକ୍ ହୋଇ ଚାରିଆଡ଼େ ଚାହିଁଲି । ଭାବୁଥାଏ, ଅଷ୍ଟ୍ରେଲିଆରେ ସିନା କଙ୍ଗାରୁ ଥା'ନ୍ତି ବୋଲି ବହିରେ ପଢ଼ିଛି । ଚିତ୍ର ବି ଦେଖିଛି। ହେଲେ ଏଇଠି କଙ୍ଗାରୁ ଆସିଲେ କୁଆଡୁ ! ଆଖି ବୁଲେଇ ଦେଖିଲାବେଳକୁ ତିନି ଚାରିଜଣ ଜୁଆଙ୍ଗୁଣୀ ମୁଣ୍ଡରେ ବୋଝ ବୋହି ପାହାଡ଼ିଆ ରାସ୍ତାରେ ପଥର ଡେଇଁ ଡେଇଁ ଓହ୍ଲେଇ ଆସୁଥାନ୍ତି। ପାଦରେ ଯୋତା କି ଚପଲ କିଛି ନ ଥାଏ। ଆଣ୍ଠୁ ଉପରକୁ ଶାଢ଼ି ପିନ୍ଧି ପଣତକୁ ବେକ ପଟୁ ଘୂରେଇ ଗୋଟିଏ ଗୋଟିଏ ଥଳି ତିଆରି କରିଥାନ୍ତି। ସେଇ ଥଳି ଭିତରେ ଛୋଟ ଛୋଟ କୁନିଛୁଆ ବସିଥା'ନ୍ତି। କେବଳ ମୁଣ୍ଡ ଦେଖା ଯାଉଥାଏ। ପୁଅ କି ଝିଅ ଜଣାନାହିଁ। ଆଖି ମିଟିମିଟି କରି ଚାରିଆଡ଼କୁ ଚାହୁଁ ଥାଆନ୍ତି। ମନ ହେଲେ, ସେଇଠି ବସି ମାଆ ପାଖରୁ କ୍ଷୀର ଚୁଚୁମୁଥାଆନ୍ତି।



ଜେଜେ କହିଲେ, "ଦେଖିଲୁ ତ କେନ୍ଦୁଝରର କଙ୍ଗାରୁଛୁଆ!!" ହସିହସି ମୋର ପେଟ ଫାଟ୍ କି ନ ଫାଟ୍। ଜୁଆଙ୍ଗ ଜୀବନରେ ଏଇ ବାତ୍ସଲ୍ୟ ପ୍ରେମର କାହାଣୀ ମୋ ପାଇଁ ଅଭୁଲା ହୋଇ ରହିଛି।

*ପଞ୍ଚମ ଶ୍ରେଣୀ, ସରସ୍ୱତୀ ଶିଶୁ ବିଦ୍ୟାମନ୍ଦିର, କେନ୍ଦୁଝର*



ଶ୍ରୀ ସୁରେଶ କୁମାର ପଣ୍ଡା

## ରାଷ୍ଟ୍ରର ପଇସା

୧୯୫୮ ମସିହାର ଘଟଣା। ମହାନ ସ୍ୱାଧୀନତା ସଂଗ୍ରାମୀ ତଥା ଦେଶସେବକ ଡାକ୍ତର ଶ୍ରୀରାମ ମନୋହର ଲୋହିୟାଙ୍କୁ କାନପୁରର ଶ୍ରମିକମାନଙ୍କ ତରଫରୁ ଅଭିନନ୍ଦନ ଜଣାଇ ପାଞ୍ଚହଜାର ଟଙ୍କାର ଏକ ଥଳି ଉପହାର ଦିଆଗଲା।

ଲୋହିୟାଜୀ ସଂଧ୍ୟାରେ ଟ୍ରେନ୍‌ରେ ଫେରିଲେ। ତାଙ୍କ ସହିତ ଥାଆନ୍ତି କାନପୁରର ସମାଜସେବୀ ତଥା ସାଂସଦ ଶ୍ରୀଜଗଦୀଶ ଚନ୍ଦ୍ର ଅବସ୍ଥି।

ରାସ୍ତାରେ ଗୋଟିଏ ଷ୍ଟେସନରେ ଗାଡ଼ି ଅଟକିଲା। ଲୋହିଆ କହିଲେ-- ଅବସ୍ଥି। ମୋର ଗଳା ଶୁଖିଯାଉଛି। ତଳକୁ ଯାଇ ମୋ ପାଇଁ ଦି'ଖଣ୍ଡ ପାନ ନେଇଆସିଲେ ଭଲହୁଅନ୍ତା।





ଅବସ୍ଥି ତାଙ୍କ ପକେଟ୍‌ରେ ହାତ ଭର୍ତ୍ତି କରି ଦେଖିଲେ ଖୁଚୁରା ନାହିଁ। ସେତିକି-ବେଳେ ତାଙ୍କର ଥଳି କଥା ମନେପଡ଼ିଲା । ସେ ସେଥିରୁ ଆଠଣିଟିଏ ବାହାର କରି ଦୁଇଖଣ୍ଡ ପାନ ନେଇଆସିଲେ। ଲୋହିଆ ଗୋଟିଏ ପୁସ୍ତକ ପଢ଼ାରେ ଲାଗିଥିବାରୁ ଏହା ଉପରେ ତାଙ୍କର ଦୃଷ୍ଟି ନ ଥାଏ।

କିଛି ସମୟ ପରେ ଲୋହିୟା ପଚାରିଲେ-- ତୁମ ପାଖରେ ବୋଧେ ଖୁଚୁରା ନ ଥିଲା, ପାନ କେମିତି ଆଣିଲ?

"ଥଳିରୁ ଆଠଣିଟିଏ ବାହାର କଲି।" ସହଜ ଭାବରେ ଉତ୍ତରଦେଲେ ଅବସ୍ଥି।

ତାଙ୍କ କଥା ଶୁଣି ଲୋହିଆଙ୍କ ମୁହଁ ଶୁଖିଗଲା। କହିଲେ-- କାର୍ଯ୍ୟକର୍ତ୍ତାମାନେ ଶ୍ରମିକମାନଙ୍କଠାରୁ ଗୋଟିଏ ଗୋଟିଏ ପଇସା ସଂଗ୍ରହ କରି ପାର୍ଟି କାମ ପାଇଁ ଦେଇଛନ୍ତି। ସେଇ ପଇସାକୁ ଆମେ ନିଜର ବାସନା ପୂର୍ତ୍ତି ନିମନ୍ତେ ବ୍ୟୟ କରିବା?

ସଙ୍ଗେ ସଙ୍ଗେ ଲୋହିଆ ନିଜ ପକେଟ୍‌ରୁ ଆଠଣିଟିଏ ବାହାର କରି ଥଳିରେ ଭର୍ତ୍ତି କଲେ। ତା'ପରେ ଯାଇ ପାନଟି ଖାଇଲେ ।

## ମୋ ମା ସ୍ୱୀକାର କରିବ ନାହିଁ



ମହାନ୍ ରାଷ୍ଟ୍ରଭକ୍ତ ତଥା ସଶସ୍ତ୍ର କ୍ରାନ୍ତିର ମୁଖ୍ୟ ପୁରୋଧା ଚନ୍ଦ୍ରଶେଖର ଆଜାଦ ଇଂରେଜ ଶାସନରୁ ଭାରତମାତାକୁ ମୁକ୍ତ କରିବାକୁ ସଦାସର୍ବଦା ତତ୍ପର ଥିଲେ । ଥରେ ଅସ୍ତ୍ରଶସ୍ତ୍ର କିଣିବା ପାଇଁ ଧନର ଆବଶ୍ୟକତା ପଡ଼ିଲା। ସେଥିପାଇଁ ଏକ ସରକାରୀ ଖଜଣାଖାନା ଲୁଟ୍ କରି ଧନ ଏକତ୍ର କରାଗଲା। ଦିନେ ସେଥିରୁ କିଛି ଅର୍ଥ ବାହାର କରି ଜଣେ ସାଥୀ ଆସି ଚନ୍ଦ୍ରଶେଖରଙ୍କୁ କହିଲେ-- ଶୁଣିବାକୁ ପାଇଲି, ଆପଣଙ୍କ ମା' ବହୁତ ଅଭାବ

ଅସୁବିଧାରେ ଅଛନ୍ତି। ମୁଁ ତାଙ୍କ ପାଇଁ ଏଇ ଅର୍ଥରୁ କିଛି ପ୍ରେରଣ କରିବାର ବ୍ୟବସ୍ଥା କରୁଛି।

କଥାଟା ଶୁଣୁଶୁଣୁ ଚନ୍ଦ୍ରଶେଖର ରାଗିଯାଇ କହିଲେ-- କ'ଣ କହିଲ? ମାତୃଭୂମିର ମୁକ୍ତି ନିମନ୍ତେ ଜୀବନକୁ ବାଜି ଲଗେଇ ଯେଉଁ ଧନ ଏକତ୍ର କରାଯାଇଛି, ତା'କୁ ଏଇ ହୀନ କାର୍ଯ୍ୟରେ ଲଗେଇବ ! ମୋ ମା' ଏଥିରୁ ଗୋଟିଏ ପଇସା ମଧ୍ୟ ସ୍ୱୀକାର କରିବ ନାହିଁ। ସିଏ ଜାଣେ କେଉଁ ଟଙ୍କା କେଉଁ କାର୍ଯ୍ୟରେ ଖର୍ଚ୍ଚ କରିବା ଉଚିତ।

ସାଥୀଜଣଙ୍କ ବାଧ୍ୟ ହୋଇ ସେଇ ଟଙ୍କା ପୂର୍ବ ସ୍ଥାନରେ ରଖିଆସିଲେ।

## ମୁଁ କୃଷକର ପୁତ୍ର

ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଗ୍ଲେଡ୍‌ଷ୍ଟୋନ୍ ଥିଲେ ଜଣେ କୃଷକର ପୁତ୍ର। ସିଏ ଅତ୍ୟନ୍ତ ସରଳ ଜୀବନ ଯାପନ କରୁଥିଲେ। ନିଜ ହାତରେ ନିଜର ଲୁଗାପଟା ସଫା କରୁଥିଲେ। ଏପରିକି ସାଇକେଲ୍ ଧରି ବଜାରକୁ ପରିବା ପାଇଁ ଯିବାକୁ ମଧ୍ୟ ସଙ୍କୋଚ କରୁ ନ ଥିଲେ।



ଥରେ ସିଏ ରେଳରେ ଯାତ୍ରା କରୁଥା'ନ୍ତି। ଗୋଟିଏ ଷ୍ଟେସନ୍‌ରେ ଏକ ବିଶିଷ୍ଟ ସମ୍ବାଦପତ୍ରର ସଂପାଦକ ତାଙ୍କୁ ସାକ୍ଷାତ କରିବାକୁ ଆସିଲେ। ତାଙ୍କର ଧାରଣା ଥିଲା ପ୍ରଧାନମନ୍ତ୍ରୀ ନିଶ୍ଚେ ପ୍ରଥମ ଶ୍ରେଣୀ ବଗିରେ ଯାତ୍ରା କରୁଥିବେ। ସେଥିପାଇଁ ପ୍ରଥମ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଡବାରେ ପହଞ୍ଚିଲେ। ପ୍ରଥମ ଶ୍ରେଣୀର ତିନୋଟି ବଗିରେ ଅନୁସନ୍ଧାନ କରି ମଧ୍ୟ ତାଙ୍କୁ ପାଇଲେ ନାହିଁ। ଏ ସମୟରେ ମୂଲ୍ୟବାନ ପୋଷାକ ପରିଧାନ କରି ଯାତ୍ରା କରୁଥିବା ଜଣେ ଯୁବକଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିଲା। ସିଏ ତାଙ୍କୁ ପ୍ରଧାନମନ୍ତ୍ରୀଙ୍କ ସଂପର୍କରେ ପ୍ରଶ୍ନ କଲେ। ଯୁବକଜଣକ ଉତ୍ତରଦେଲେ ଯେ ସିଏ ଦ୍ୱିତୀୟ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ବଗିରେ ଯାତ୍ରା କରୁଛନ୍ତି।

ସଂପାଦକଙ୍କୁ କଥାଟା ବିଶ୍ୱାସ ହେଲା ନାହିଁ। ସେଥିପାଇଁ ସିଏ ସନ୍ଦେହାତ୍ମକ ଦୃଷ୍ଟିରେ ଯୁବକଙ୍କ ଆଡ଼କୁ ଚାହିଁରହିଲେ। ତାହା ଦେଖି ଯୁବକଜଣକ କହିଲେ, ''ଆପଣ ଏଥିରେ ଅବିଶ୍ୱାସ କରିବାର କିଛି ନାହିଁ। କାରଣ ମୁଁ ହେଉଛି ତାଙ୍କର ପୁତ୍ର।'' ସଂପାଦକ ଦ୍ୱିତୀୟ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ବଗିକୁ ଯାଇ ଦେଖିଲେ ଯେ ଗ୍ଲେଡ୍‌ଷ୍ଟୋନ୍ ସେଠାରେ ବସି ଖବରକାଗଜ ପଢ଼ୁଛନ୍ତି। ତାହା ଦେଖି ଆଶ୍ଚର୍ଯ୍ୟରେ ପ୍ରଶ୍ନ କଲେ, ''ମହାଶୟ ! ଆପଣ ପ୍ରଧାନମନ୍ତ୍ରୀ ହୋଇ ଦ୍ୱିତୀୟ ଶ୍ରେଣୀରେ ଯାତ୍ରା କରୁଛନ୍ତି; କିନ୍ତୁ ଆପଣଙ୍କ ପୁତ୍ରଙ୍କୁ ପ୍ରଥମ ଶ୍ରେଣୀରେ ଦେଖିଲି। ଏହାର ରହସ୍ୟ କ'ଣ ?''

''ବନ୍ଧୁ ! ମୁଁ ହେଉଛି ଜଣେ ସାଧାରଣ କୃଷକର ପୁତ୍ର ଆଉ ସିଏ ଇଂଲଣ୍ଡର ପ୍ରଧାନମନ୍ତ୍ରୀଙ୍କର ପୁତ୍ର। ତେଣୁ ଏଭଳି ପ୍ରଭେଦ ରହିବା ସ୍ୱାଭାବିକ।'' ସ୍ମିତହାସ୍ୟ କରି କହିଲେ ପ୍ରଧାନମନ୍ତ୍ରୀ।

*ଗୁମୁଡ଼ା, ବି.ସିଂହପୁର, କୋରାପୁଟ-୭୬୪୦୫୭*

---

**ବାୟୁ ପ୍ରଦୂଷଣର ଉତ୍ତର-** ୧। ତାଳଚେର, ୨। ସଲଫର ଡାଇଅକ୍‌ସାଇଡ୍ ($SO_2$), ୩। ଚୀନ୍, ୪। ଜାପାନ୍, ୫। ଇ.ଏସ୍.ପି (ଇଲେକ୍ଟ୍ରୋଷ୍ଟାଟିକ୍ ପ୍ରେସିପିଟେଟର) ବାୟୁ ପ୍ରଦୂଷଣ ନିୟନ୍ତ୍ରଣକାରୀ ଯନ୍ତ୍ର, ୬। ୧୯୮୧ ୭। ଇରାନ୍, ୮। ୨ ଭାଗରେ, ୯। ୧୯୮୪, ୧୦। ଏମ୍. ଆଇ. ସି. (ମିଥାଇଲ୍ ଆଇସୋ ସିଆନେଟ୍)।

# ଦୁଇଟି ସିଂହର କାହାଣୀ



କଲିକତାର ଆଲିପୁର ଚିଡ଼ିଆଖାନାରୁ ଦୁଇଟି ସିଂହ ଖସି ପଳାଇଲେ । ଗୋଟିଏ ସିଂହ ବଣରୁ ଧରାହୋଇ ଆସିଥିଲା । ତେଣୁ ସେ ଜଙ୍ଗଲ ଭିତରକୁ ଦଉଡ଼ି ପଳାଇଲା । ଅନ୍ୟ ସିଂହଟି ସେହି ଚିଡ଼ିଆଖାନାରେ ଜନ୍ମ ହୋଇଥଲା , ତେଣୁ ସେ ସହରୀ ବାତାବରଣରେ ବଢ଼ିଥିବାରୁ ସହର ଭିତରକୁ ଚାଲିଯାଇ ଲୁଚିଗଲା ।

ଖୋଜାଖୋଜି ଚାଲିବାର ତିନିଦିନ ପରେ ଜଙ୍ଗଲୀ ସିଂହଟି ପୁଣିଥରେ ଧରାପଡ଼ିଗଲା ଓ ତାକୁ ଚିଡ଼ିଆ-ଖାନାରେ ରଖାଗଲା । ମାସେ ଗଲା, ଦୁଇମାସ ଗଲା, ତିନିମାସ ବି ଗଲା; କିନ୍ତୁ ସହରରେ ଲୁଚିଥିବା ସିଂହର କୌଣସି ପତ୍ତା ମିଳିଲା ନାହିଁ । ଶେଷରେ ଛଅମାସ ପରେ ସେଇ ସିଂହଟି ମଧ୍ୟ ଧରାଗଲା ଓ ତାକୁ ଚିଡ଼ିଆଖାନାରେ ରଖାଗଲା ।

ଜଙ୍ଗଲୀ ସିଂହଟି ତା'ର ବନ୍ଧୁକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା ।

ଜଙ୍ଗଲୀ ସିଂହଟି ପଚାରିଲା- ତମେ ପୂରା ଛଅମାସ ଯାଏ କିପରି ଧରା ନ ପଡ଼ି ରହିପାରିଲ ?

ସହରୀ ସିଂହ-- କିଛି ନୁହେଁ ମ ! ମୁଁ ଗୋଟିଏ ସରକାରୀ ଅଫିସ ଭିତରେ ପଶି ଧୂଳିମଳି ଭର୍ତ୍ତି ଗୋଟାଏ ବିରାଟ ଫାଇଲ ଗଦା ପଛରେ ଲୁଚିପଡ଼ିଲି ।

ଜଙ୍ଗଲୀ ସିଂହ-- କିନ୍ତୁ ତମେ ସେଠି ଖାଉଥିଲ କ'ଣ ?

ସହରୀ ସିଂହ-- ଆରେ, ସେଠାରେ ଅସଂଖ୍ୟ ସରକାରୀ ଚାକିରିଆ ଥିଲେ । କେହି ପ୍ରାୟ କିଛି କାମ କରନ୍ତିନି । କେତେବେଳେ ଜଣେଅଧେ କିଏ ସେଇ ବାଟ ଦେଇ ଯାଆନ୍ତି । ସେ ଫାଇଲଗଦାରେ କାହାର କାମ ନଥାଏ । ସେଠି ମୁଁ ଜଣକୁ ଟାଣିଆଣି ଖାଇଲେ, ସେମାନେ ସେ ବିଷୟରେ କିଛି ଜାଣିପାରନ୍ତିନି । ସେଠି ତ କେହି କାମ କରନ୍ତିନି । ତେଣୁ ମୁଁ ଜଣକୁ ଖାଇଦେଲେ ସେ କର୍ମଚାରୀ ଆଉ ଅଫିସ ଆସୁନି ବୋଲି କାହାକୁ ଜଣାପଡ଼େନି । ଆଉ ନୂଆ ଲୋକ ରଖିଦିଅନ୍ତି ।

ଜଙ୍ଗଲୀ ସିଂହ-- ବାଃ ! ବଡ଼ ସୁବିଧା କଥା ତ; କିନ୍ତୁ ତମେ ଧରାପଡ଼ିଲ କେମିତି ?

ସହରୀ ସିଂହ-- ଆରେ ଭାଇ, ମୁଁ ଗୋଟାଏ ଭୁଲ୍ କରିଦେଲି । ଦିନେ ମୁଁ ସେଇ ଅଫିସ୍‌କୁ ପ୍ରତିଦିନ ଚା' ଦେବାକୁ ଆସୁଥିବା ଚା'ବାଲାକୁ ଖାଇଦେଲି । ଚା'ବାଲା କୁଆଡ଼େ ଗଲା ବୋଲି ସେଦିନ ଅଫିସସାରା ହଇଚଇ ହୋଇଗଲା । ସେମାନେ ଚା'ବାଲା ପାଇଁ ଅଫିସସାରା ଖୋଳତାଡ଼ କରିଦେଲେ, ଆଉ ଶେଷରେ ମୁଁ ଧରାପଡ଼ିଗଲି ।

ଅନୁବାଦ- **ଇଂ ରଘୁନାଥ ପ୍ରସାଦ ଦାସ**



# ଶ୍ରୀଫଳ

ଶ୍ରୀ ପ୍ରତାପ କିଶୋର ମହାନ୍ତି

ଶ୍ରୀଫଳକୁ ଗ୍ରାମ୍ୟ ଭାଷାରେ 'ନଡ଼ିଆ' କୁହାଯାଏ। ଏହାର ଅନ୍ୟନାମ ନାରିକେଳ। ବୈଜ୍ଞାନିକ ନାମ 'କୋକସ୍ ନସିଫେରା' (Cocas nacifera)। ଏହା ଗୁଆ ଗଛ ପରିବାର ଅନ୍ତର୍ଭୁକ୍ତ।

ହିନ୍ଦୁ ଧର୍ମରେ ଶ୍ରୀଫଳର ବଡ଼ ଆଦର। ଏହାକୁ ଏକ ପବିତ୍ର ଫଳ ଭାବେ ବିବେଚନା କରାଯାଏ। ଏକ ଜଳଭରା କଳସ ବା କୁମ୍ଭ ଉପରେ ଆମ୍ରପତ୍ରର ଛୋଟ ଡାଳ ରଖି ଏବଂ ତା' ଉପରେ ଏକ ନାସିଯୁକ୍ତ ପଇଡ଼ ବା ଚୂଳଯୁକ୍ତ ନଡ଼ିଆ ରଖିଲେ ତାହାକୁ ଶ୍ରୀଗଣନାଥ ଭାବେ ବିବେଚନା କରାଯାଏ। ପ୍ରତି ପୂଜା ସମୟରେ ସେ କଳସରୂପୀ ଶ୍ରୀଗଣନାଥଙ୍କୁ ପ୍ରଥମେ ପୂଜା କରାଯାଇଥାଏ। ଶ୍ରୀଫଳକୁ ଏପରି ସମ୍ମାନ ମିଳିବାର କାରଣ-- ମନୁଷ୍ୟଙ୍କୁ ଏଥିରୁ ଏକ ସଙ୍ଗେ ପୁଷ୍ଟିକାରକ ଖାଦ୍ୟ ଓ ମିଷ୍ଟ ସୁସ୍ୱାଦୁ ପାନୀୟ ମିଳିଥାଏ। ଖୁରଡ଼ ନଡ଼ିଆ ଶସରୁ ନଡ଼ିଆ ତେଲ ବାହାର କରାଯାଇଥାଏ। ଏହି ତେଲକୁ ମୁଣ୍ଡ ଓ ଦେହରେ ଲଗାଇଲେ କେଶ ଭଲଭାବେ ବଢ଼େ ଓ ସ୍ୱାସ୍ଥ୍ୟ ଭଲ ରହେ। ଗୋଆ, କେରଳ ଆଦି ପ୍ରଦେଶରେ ନଡ଼ିଆ ତେଲରେ ସମସ୍ତ ରନ୍ଧନ କାର୍ଯ୍ୟ ହୁଏ। ଏହି ଫଳ ଏକ ଅର୍ଥପ୍ରଦାନକାରୀ ଫଳ।

ନାରିକେଳ ବା ଶ୍ରୀଫଳ ଗୋଟିଏ ତନ୍ତୁଯୁକ୍ତ ଅଷ୍ଠିଳା ଫଳ (Drupe)। ଫଳ ଉପରେ ଥିବା କତା ଟାଣ, କତା ଉପରେ ଅତି ପତଳା ସବୁଜ (ପଇଡ଼ରେ) ବା ଧୂସର (ଶୁଖିଲା ନଡ଼ିଆରେ)ଆବରଣ ଏହାର ବାହ୍ୟବର୍ମ (epicarp)। କତା ଅଂଶଟି ମଧ୍ୟବର୍ମ (Mesocarp) ଭାବେ ପରିଗଣିତ ହୁଏ। ନଡ଼ିଆର ସଢ଼େଇ ଅନ୍ତଃବର୍ମ (endocarp) ଭାବେ ଚିହ୍ନିତ। ସଢ଼େଇ ଉପରେ ପାଖାପାଖି ତିନୋଟି ଆଖି ଥାଏ। ଗୋଟିଏ ଆଖି ତଳକୁ ଭ୍ରୂଣ ଥାଏ। ସଢ଼େଇ ଭାଙ୍ଗିଲେ ଗାଢ଼ ବାଦାମୀ ରଙ୍ଗର ବୀଜାବରଣ ମଧ୍ୟରେ ବୀଜ ଦେଖାଯାଏ। ନଡ଼ିଆ ମଧ୍ୟରେ ଥିବା ଶସ ଓ ସୁସ୍ୱାଦୁ ଜଳ ଉଭୟ ଭ୍ରୂଣପୋଷକ। ନଡ଼ିଆ ପୂରା ଶୁଖିଗଲେ ଭିତରେ ଥିବା ତରଳ ଭ୍ରୂଣପୋଷକ କ୍ରମଶଃ କଠିନ ଶସ (solid eneosperm) ରେ ପରିଣତ ହୁଏ।

ନଡ଼ିଆର ଅଙ୍କୁରଣ ସମୟରେ ଭ୍ରୂଣର ତଳଭାଗରୁ ଭ୍ରୂଣପତ୍ର ବୃଦ୍ଧି ପାଇ ଭ୍ରୂଣପୋଷକ ମଧ୍ୟରେ ଗୋଟିଏ ସ୍ପଞ୍ଜ ପରି ପିଣ୍ଡ ସୃଷ୍ଟି କରେ। ଏହି ଭ୍ରୂଣପତ୍ର ଭ୍ରୂଣ ପୋଷକ ମଧ୍ୟରେ ସଞ୍ଚିତ ଖାଦ୍ୟ ଆହରଣ କରି ଆସ୍ତେ ଆସ୍ତେ ଆକାରରେ ବୃଦ୍ଧି ପାଇଥାଏ। ଭ୍ରୂଣର ଉପରିଭାଗ ବଢ଼ି ଭ୍ରୂଣମୂଳ ଓ ଭ୍ରୂଣକାଣ୍ଡ ସହ ଗୋଟିଏ ଆଖି ମଧ୍ୟ ଦେଇ

ନାରିକେଳ ଫଳର ଅନ୍ଦୈର୍ଘ୍ୟଚ୍ଛେଦ (L.S.)

[ନଡ଼ିଆର ଅଙ୍କୁରଣ]



ପଦାକୁ ବାହାରେ। ଭୃଣକାଣ୍ଡ ତନ୍ତୁମୟ ଫଳାବରଣ ଭେଦକରି ଗୋଟିଏ ଶୃଙ୍ଗ ଆକାରରେ ବାହାରେ। ପରେ ଚେରଗୁଛ ଭୂମିକୁ ସ୍ପର୍ଶ କଲେ ତାହା ପ୍ରରୋହ (ଊର୍ଦ୍ଧ୍ୱଗାମୀ କାଣ୍ଡ)ରେ ପରିଣତ ହୁଏ। ଭୃଣମୂଳ (Radicle) ଆଉ ବଢ଼ିପାରେ ନାହିଁ; କିନ୍ତୁ ଭୃଣକାଣ୍ଡର ଅଧୋଭାଗରୁ ଆସ୍ଥାନିକ ମୂଳମାନ (Adventitious roots) ନିର୍ଗତ ହୁଏ। ଆସ୍ଥାନିକ ଚେରମାନ ମୃତ୍ତିକା ମଧ୍ୟରେ ପ୍ରବେଶ କରି ଚାରାଗଛକୁ ଦୃଢ଼ ଭାବେ ଧରି ରଖେ।

ନାରିକେଳ ବୃକ୍ଷ ସମୁଦ୍ରତଟ ଓ ଉପକୂଳ ଅଞ୍ଚଳମାନଙ୍କରେ ଦେଖାଯାଏ। ନାରିକେଳ ଫଳ ତନ୍ତୁବହୁଳ ଥିବାରୁ ଜଳରେ ଭାସେ ଓ ବହୁଦିନ ଧରି ଜଳରେ ସୁରକ୍ଷିତ ରହେ।

ଏହି ଫଳ ସାଗର ତରଙ୍ଗ ଦ୍ୱାରା ପ୍ରଶାନ୍ତ ଓ ଭାରତ ମହାସାଗରର ଦୂରଦୂରାନ୍ତ ଦ୍ୱୀପାଞ୍ଚଳମାନଙ୍କରେ ପ୍ରସାରିତ ହୋଇଛି। ଭାରତ ଓ ପ୍ରଶାନ୍ତ ମହାସାଗରର ବହୁ ଦ୍ୱୀପ, ଆମ ପ୍ରଦେଶର ଉପକୂଳ ଅଞ୍ଚଳ (ପୁରୀ, କଟକ, କେନ୍ଦ୍ରାପଡ଼ା, ବାଲେଶ୍ୱର, ଗଞ୍ଜାମ ଜିଲ୍ଲା ଇତ୍ୟାଦି)ରେ ଏହା ବହୁଳ ପରିମାଣରେ ବିଦ୍ୟମାନ। କେରଳ, ଗୋଆ, ଆନ୍ଧ୍ର, ମହାରାଷ୍ଟ୍ର, ତାମିଲନାଡୁ, କର୍ଣ୍ଣାଟକ ଇତ୍ୟାଦି ପ୍ରଦେଶରେ ଏହାକୁ ବହୁଳଭାବେ ଲଗାଯାଏ।

*ଦେଉଳସାହି, ତୁଳସୀପୁର, କଟକ-୮*

---

# ପହେଲି

ଶ୍ରୀ ରବୀନ୍ଦ୍ର କୁମାର ସାହୁ

(୧)

କହିବ ଏମିତି ମାଟିର ନାଆଁ
ଖରାଦିନେ ପାଟି କରଇ ଆଁ,
ନ କାଟେ କୋଦାଳ ନ କାଟେ କୋଡ଼ି
ବରଷା ଜଳକୁ ନ ଦିଏ ଛାଡ଼ି।

(୨)

ଗଛଟିଏ କୁହ ନ ଥିବ ଗଣ୍ଠି
ମଞ୍ଜି ବିନା ଥିବ ମାଟିରୁ ଉଠି,
ମଣିଷର ଖାଦ୍ୟ ମୂଳରୁ ଚୂଳ
ଦିଅଇ ବାସନ ଗୁଛଇ ମାଳ।

(୩)

କାହିଁ ଅଛି କୁହ ଏମିତି ଫଳ
ଯୋଗାଏ ଆହାର ଯୋଗାଏ ଜଳ,
ଦିଏ ତେଲ ପୁଣି ଚୁଲିକୁ ଜାଳ
ବସିବାକୁ ଦିଏ ଗଦି କଅଁଳ।

*କୁମ୍ଭୀର ଗଡ଼ିଆ, ଯାଜପୁର-୭୫୫୦୨୬*



*(ଉତ୍ତର ୨୪ ପୃଷ୍ଠାରେ)*



# ଚଗଲା ସୁଧୁରିଗଲା

ଶ୍ରୀ ଦୁର୍ଗା ଚରଣ ନନ୍ଦ

ଆମରି ଗାଆଁରେ ଚଗଲା ନାମରେ
ଦୁଷ୍ଟ ପିଲାଟିଏ ଥିଲା
ଚଳନ୍ତା ଶଗଡ଼େ ହାତ ମାରୁଥିଲା
ବୃକ୍ଷେ ଫିଙ୍ଗୁଥିଲା ଢେଲା ।
ଏହା ଦେଖି ବାପା ଯେତେ ବୁଝାଇଲେ
ବୁଝିଲାନି ସେହି ଜମା
ଦୁଷ୍ଟାମି ତାହାର କମିବା ବଦଳେ
ଟପିଗଲା ସବୁ ସୀମା ।
ବାପା ରାଗିକରି କହିଲେ ଆଜିଠୁ
ଦୁଷ୍ଟକାମ ତୁହି କଲେ
ଏକ ଦୋଷ ପାଇଁ ଏକ ଗୋଡ଼ି ମୁହିଁ
ଥୋଇବି ଏ ଅଗଣାରେ ।
ଦେଖିଲା ଚଗଲା ଗୋଟିଏ ମାସରେ
ଗୋଡ଼ି ହୋଇଗଲା ଗଦା
ଦେଖି କରି ଏହା କଲା ଅନୁତାପ
ଚକ୍ଷୁ ତା'ହୋଇଲା ଓଦା ।

କହିଲା-- ବାପା ହେ କରୁଛି ଶପଥ
ଚଗଲାମି ଦେବି ଛାଡ଼ି
ଗୋଟେ ଭଲ କାମ ପାଇଁ ଗୋଟେ ଗୋଡ଼ି
ଗଦାରୁ ଦେବଟି କାଢ଼ି ।
ବାପା ହୋଇ ରାଜି ଭଲ କାର୍ଯ୍ୟ ପାଇଁ
ଗୋଡ଼ି କାଢ଼ି ଦେଲେ ଧୀରେ
ଚଗଲା ଦେଖିଲା ଅଧାରୁ ଅଧିକ
ରହିଛି ବରଷେ ପରେ ।
କହିଲା ମାସକେ ମନ୍ଦ କାର୍ଯ୍ୟ କଲି
ହୋଇଥିଲା ଏକ ଗଦା
ବରଷଯାକରେ ଭଲ କାମ କରି
ଖାଲି ହେଲାନାହିଁ ଅଧା ।
ବୁଝାଇଲେ ବାପା କୁ-ରାସ୍ତାରେ ଯିବା
ଅଟଇ ଭାରି ସହଜ
ଭଲ କାମ ପାଇଁ ଡେରି ହୋଇଥାଏ
ଲୋଡ଼ା ହୋଇଥାଏ ଧୈର୍ଯ୍ୟ ।
ସତ ପଥେ ଯିବା ଲୋକଙ୍କୁ ଈଶ୍ୱର
କରନ୍ତି ବହୁ ପରୀକ୍ଷା
ସେଥିରେ ସଫଳ ହୁଅଇ ଯେ ନର
ହୁଅନ୍ତି ସେ ତା'ର ସଖା ।
ବୁଝିଲା ଚଗଲା ମାରିବା ସହଜ
ବଞ୍ଚାଇବା ଭାରି କଷ୍ଟ
ଗଢ଼ିବାକୁ ବହୁ ସମୟ ଲାଗଇ
ଶୀଘ୍ର କରି ହୁଏ ନଷ୍ଟ ।

*କ୍ୱା.ନଂ.- ଆଇ.ଭି.ଏ. -୪୨/୪, ୟୁନିଟ୍-୨, ଭୁବନେଶ୍ୱର*



(ଉତ୍ତର- ମଟାଳ, କଦଳୀ, ନଡ଼ିଆ,)

## ଜଣେ ସଫଳ ଯାତ୍ରୀ

ଶ୍ରୀ ଗଜେନ୍ଦ୍ର ବେହେରା

(ଜଣେ ଜଣେ ବ୍ୟକ୍ତିତ୍ୱ ଏଭଳି ଯେ ସେମାନେ ନିଜର କୃତିତ୍ୱ ବା ମଣିଷପଣିଆକୁ ବାହାରେ ପ୍ରକାଶ କରିବାକୁ କୁଣ୍ଠାବୋଧ କରନ୍ତି ବା ତାଙ୍କ ଭିତରେ ଅନେକ ସୁଗୁଣ, ମହତପଣିଆ ରହିଛି ତାହାକୁ ସେମାନେ ଗୁରୁତ୍ୱ ଦିଅନ୍ତି ନାହିଁ । ବିଭୂତି ଭୁଷଣ ମହାନ୍ତି ସେହିଭଳି ଜଣେ ପ୍ରଚାର ଓ ପ୍ରସାରବିରୋଧୀ ଖ୍ୟାତିସଂପନ୍ନ ବ୍ୟକ୍ତିତ୍ୱ । 'ସଂସାର'ର ପ୍ରତିଷ୍ଠାତା ରାମକୃଷ୍ଣ ନନ୍ଦଙ୍କର ସେ ଜଣେ ଉଚ୍ଚ ପ୍ରଶଂସକ ଥିଲେ । ପ୍ରତିଷ୍ଠାତା ତାଙ୍କୁ ମଧ୍ୟ ଖୁବ୍ ଭଲପାଉଥିଲେ । ତାଙ୍କ ମୃତ୍ୟୁପରେ ତାଙ୍କ ବିଷୟରେ କିଛି ଲେଖିଲେ ହୁଏତ ପ୍ରତିଷ୍ଠାତାଙ୍କ ଆତ୍ମା କିଞ୍ଚିତ ଶାନ୍ତିଲାଭ କରିବ, ଏହି ଆଶାରେ ଆମର ଶୁଭେଚ୍ଛୁ ତଥା ସଂସାରର ଲେଖକ ଶ୍ରୀ ଗଜେନ୍ଦ୍ର ବେହେରାଙ୍କର ଏ ଆଲେଖ୍ୟ ।)

କଟକରୁ ପାରାଦ୍ୱୀପ ଯାଇଥିବା ପକ୍‌କା ସଡକ ପାଖରେ ତାରପୁର । ଏଠାରୁ ମହାନଦୀ ପାରି ହୋଇ ୪/୫ କିଲୋମିଟର ବାଟ ଗଲେ କେଶୋଳ ଗ୍ରାମ । ଏହି ଗ୍ରାମରେ ୧୯୩୧ ମସିହା ମାର୍ଚ୍ଚ ୨୫ ତାରିଖରେ ବିଭୂତି ଭୂଷଣ ମହାନ୍ତିଙ୍କର ଜନ୍ମ ।

ବିଭୂତିବାବୁ ତେଣ୍ଡାକୁଡା ସ୍କୁଲ ଓ ପରେ କେନ୍ଦ୍ରାପଡା ହାଇସ୍କୁଲରୁ ମାଟ୍ରିକ୍ ପାଶ୍ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ବି.ଏସ୍‌ସି. ପରେ କୋଲକାତା ବିଶ୍ୱବିଦ୍ୟାଳୟରୁ ଫିଜିକ୍ସ ଓ ଇଲେକ୍‌ଟ୍ରୋନିକ୍ସରେ ଏମ୍.ଏସ୍‌ସି. ପାଶ୍ କରିଥିଲେ । ସେ ଲଣ୍ଡନରୁ ଗ୍ରାଡ୍ ବ୍ରିଟ୍ ଆଇ.ଆର୍.ଇ. ଡିପ୍ଲୋମା ଲାଭ କରିଥିଲେ । ମାନ୍ଦ୍ରାଜର ମଦୁରା ଜିଲ୍ଲା ଅନ୍ତର୍ଗତ ଗାନ୍ଧୀ ଗ୍ରାମଠାରେ ସାମାଜିକ ଶିକ୍ଷାରେ ତାଲିମ ପାଇଥିଲେ ।

ସେ ଶ୍ରୀଲଙ୍କାର କଲମ୍ବୋରେ ଥିବା ୱାର୍ଲଡ୍ ଇଣ୍ଟରନ୍ୟାସନାଲ ଫାଉଣ୍ଡେସନ୍‌ର ଉପସଭାପତି ଥିଲେ । ନୂଆଦିଲ୍ଲୀର ଦୃଶ୍ୟଶ୍ରାବ୍ୟ ଏବଂ ଯୋଗାଯୋଗ ବିଭାଗର ମୁଖ୍ୟ, ଭାରତୀୟ ଜନସଞ୍ଚାର ସଂସ୍ଥାନ ଢେଙ୍କାନାଳର ରେସିଡେଣ୍ଟ୍ ଡାଇରେକ୍ଟର ଓ ପରେ ନୂଆଦିଲ୍ଲୀସ୍ଥିତ ଇଣ୍ଡିୟାନ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମାସ ଏଜୁକେସନ୍ ଅଡିଓ ଭିଜୁଆଲ ବିଭାଗର ମୁଖ୍ୟ ପ୍ରଫେସର ଭାବେ ନଅବର୍ଷ ଧରି କାର୍ଯ୍ୟ କରିଥିଲେ । ଏହା ବ୍ୟତୀତ ସେ ବିଭିନ୍ନ ଅନୁଷ୍ଠାନ ସଂସ୍ଥା ଓ କମିଟିର ସଦସ୍ୟ ମଧ୍ୟ ଥିଲେ ।

ବିଭୂତିବାବୁ ଓଡିଆରେ ବେତାର କଥା ଓ କେତେଗୁଡିଏ ଉଚ୍ଚକୋଟୀର ପୁସ୍ତକ ରଚନା କରିଛନ୍ତି । ୧୯୫୪ ମସିହାରୁ ଆରମ୍ଭ କରି ରେଡିଓ, ଟେଲିଫୋନ୍ ଆଦି ବିଷୟରେ କଟକରୁ ପ୍ରକାଶିତ ହେଉଥିବା ସଂସାର ପତ୍ରିକାରେ ତାଙ୍କର ଅନେକ ଲେଖା ପ୍ରକାଶ ପାଇଛି । 'ସଂସାର'କୁ ସେ ଖୁବ୍ ଭଲପାଉଥିଲେ ।

ସେ ନେହେରୁ ଲିଟେରାସି ସମ୍ମାନ ଓ ସର୍ଦ୍ଦାର ପଟେଲ ଲିଟେରାସି ସମ୍ମାନ ପାଇଥିଲେ ।

ସେ ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କ କନ୍ୟାଙ୍କୁ ବିବାହ କରିଥିଲେ ।

ଶିକ୍ଷା ବିଭାଗକୁ ତାଙ୍କର ଅବଦାନ ଅନେକ । ମୁଁ ଯେତେବେଳେ ଅଷ୍ଟମ ଶ୍ରେଣୀରେ ପଢୁଥିଲି, ତାଙ୍କ ଠାରୁ ପ୍ରେରଣା ପାଇ ମୁଁ ଗଳ୍ପ ଲେଖିବା ଆରମ୍ଭ କଲି । ତାଙ୍କରି ଉତ୍ସାହ ଯୋଗୁଁ ୧୯୫୩ ମସିହା ଡିସେମ୍ବର 'ସଂସାର'ରେ ପ୍ରଥମଥର ପାଇଁ ମୋର ଗୋଟିଏ ଗଳ୍ପ ପ୍ରକାଶ ପାଇଥିଲା । ଏହାପରେ ମୋର ୧୦ଟି ଗଳ୍ପକୁ ନେଇ ଗୋଟିଏ ବହି ପ୍ରକାଶ ପାଇଛି ।

# ବୁଦ୍ଧି ପରୀକ୍ଷା

ଶ୍ରୀ ସହଦେବ ସାହୁ

**୧ ।** ରାମର ବୟସ ଶ୍ୟାମର ଦୁଇଗୁଣ। କିନ୍ତୁ ଶ୍ୟାମ ବୟସରେ ଗଦାଧରର ଅଧା ହେବ। ଏମାନଙ୍କ ମଧ୍ୟରୁ ଦୁଇଜଣ ଜାଆଁଳା ଭାଇ। ସେମାନଙ୍କୁ ଚିହ୍ନଟ କର ତ !

**୨ ।** ସେଦିନ ଆମ ଘରବାଟେ ଜଣେ ଦହି ବିକାଳି ଯାଉଥିବାବେଳେ ମୁଁ ତାଙ୍କୁ ଅଧା ଲିଟର ଦହି ମାଗିଲି। ସେ କହିଲା, "ଆପଣ ସାତଶହ ନିଅନ୍ତୁ କି ଚାରିଶହ ନିଅନ୍ତୁ, ମୋ ପାଖରେ ପାଞ୍ଚଶହ ମାପ ନାହିଁ।" ତା' ଭାଷାରେ ସେ ମିଲିଲିଟର ଲଗାଉ ନ ଥାଏ। କିନ୍ତୁ ମୋର ପାଞ୍ଚଶହ ମିଲିଲିଟର ଦରକାର ଥିଲା। ମୋ ହାତରେ ବଇନା କରିବ ବୋଲି ସେ ମୋତେ ଯେମିତି ହେଲେ ବିକିବ। ମୁଁ କିପରି ତାର ଦୁଇଟି ମାପପାତ୍ରରୁ ପାଞ୍ଚଶହ ଦହି ମାପିପାରିବି ?

**୩ ।କ)** କୌଣସି ଖାଦ୍ୟ ବିଷାକ୍ତ ବୋଲି କିପରି ଜାଣିବ?

**ଖ)** କୌଣସି ଦଳର ନେତା ହୋଇ ନ ପାରିଲେ କ'ଣ କରିବ ?

**ଗ)** ଦିଆସିଲି ନ ଥିଲେ କିପରି ନିଆଁ ଲଗାଇବ ?

**ଘ)** ବଣରେ ଯାଉଥିବାବେଳେ ସଙ୍ଗରେ ଥିବା ଖାଦ୍ୟ ସରିଗଲେ କ'ଣ କରିବ ?

**୪ ।** ରାସ୍ତାରେ ଜଣେ ଶିକାରୀ ଭର୍ତ୍ତି ବସ୍ତାଟିଏ କାନ୍ଧରେ ପକାଇ ଲେଉଟୁଥିଲା। କେତେ ଶିକାର କଲୁ କି ? ବୋଲି ମୁଁ ପଚାରିଦେଲି ଯେ ସେ ବାହାଦୁରି ଦେଖାଇ କହିଲା, "ଖାଲି ଠେକୁଆ ଆଉ ଚଢ଼େଇ।" "କେତେଟା ଲେଖାଁ ?" ମୁଁ ପୁଣି ପଚାରିଲି। ତା'ର ଉତ୍ତର ହେଲା--"ଦୁଇକୋଡ଼ି ମୁଣ୍ଡ ଆଉ ଆଠ ଡଜନ୍ ଗୋଡ଼।" ଶିକାରୀର ବସ୍ତା ଭିତରେ କେତୋଟି ଠେକୁଆ ଆଉ ଚଢ଼େଇ ଥିଲା ?

**୫ ।** ଅତି ଛୋଟ କେଉଁ ସଂଖ୍ୟାକୁ ୨ରେ ଭାଗ କଲେ ୧, ୩ରେ ଭାଗ କଲେ ୨, ୪ରେ ଭାଗ କଲେ ୩, ୫ରେ ଭାଗ କଲେ ୪ ଅବଶେଷ ରହେ ?

**୬ ।କ)** ପାହାଡ଼ ଉପରକୁ ଯାଏ, ପାହାଡ଼ରୁ ତଳକୁ ଆସିଥାଏ, ସମତଳରେ ବେଶି ଦେଖାଯାଏ। ତଥାପି ସେ ଚାଲିପାରେ ନାହିଁ --ସେ କ'ଣ ?

**ଖ)** କେଉଁଠାରେ ପାଣି ନ ଥାଇ ମଧ୍ୟ ଆମେ ସମୁଦ୍ର ଦେଖିବାକୁ ପାଉ ?

**ଗ)** ମହୁମାଛି ଆମକୁ ଲାଗ ଲାଗ କେତେଥର ଦଂଶନ କରିପାରେ ?

**ଘ)** କେତେକ ଲୋକଙ୍କୁ ଛେଳିଦାନ୍ତିଆ କହିଲେ ସେମାନେ ଚିଡ଼ନ୍ତି କି ?

(ଉତ୍ତର .... ପୃଷ୍ଠାରେ)

---

ଗାଁ କୁ ବିଭୂତି ସାର୍ ଆସୁଥିଲାବେଳେ ତାଙ୍କ ସହିତ ମୋର ସାମୟିକ ସାକ୍ଷାତ ହୋଇଥାଏ। ତାଙ୍କର ମୋ ପ୍ରତି ଥିବା ଶ୍ରଦ୍ଧା ଓ ସହାନୁଭୂତି ଭୁଲିବାର ନୁହେଁ।

୨୦୧୪ ନଭେମ୍ବର ୨୨ ତାରିଖରେ ସମ୍ବାଦପତ୍ରରୁ ତାଙ୍କର ଦେହାନ୍ତ ଖବର ଶୁଣି ଅତ୍ୟନ୍ତ ଦୁଃଖିତ ହୋଇଥିଲି। ତାଙ୍କ ଆତ୍ମାର ସଦ୍‌ଗତି ପାଇଁ ମୁଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି।

*ମହମ୍ମଦପୁର, ପୋ-ତେଣ୍ଡାକୁଡା, ଜି-କଟକ-୭୫୪୧୩୪*

# ପୁରୁଷୋତ୍ତମ ଶ୍ରୀଜଗନ୍ନାଥ

ଶ୍ରୀମତୀ କୃଷ୍ଣପ୍ରିୟା ପଟ୍ଟନାୟକ

ଶଙ୍ଖନାଭି ମଣ୍ଡଳର ରତ୍ନ ସିଂହାସନରେ ବିରାଜିତ ପୁରୁଷୋତ୍ତମ ଜଗନ୍ନାଥ ଦାରୁବ୍ରହ୍ମ ରୂପରେ। ଅତ୍ୟନ୍ତ ରହସ୍ୟମୟ ତାଙ୍କର ଲୀଳାଖେଳା । ତାଙ୍କର ଚକ୍ର ନୀଳଚକ୍ର। ବାନା ପତିତପାବନ, ମନ୍ଦିର ଶ୍ରୀମନ୍ଦିର। ଦାଣ୍ଡ ବଡ଼ଦାଣ୍ଡ, ପଣ୍ଡା ବଡ଼ପଣ୍ଡା, ସମୁଦ୍ର ମହୋଦଧି। ପ୍ରସାଦ ମହାପ୍ରସାଦ, ମଶାଣି ସ୍ୱର୍ଗଦ୍ୱାର। ମହାବାହୁଙ୍କର ସମସ୍ତ ପଦାର୍ଥ ବଡ଼। ସେ ବଡ଼ ଦିଅଁ। ସମସ୍ତ ଦେବୀଦେବତାଙ୍କ ସଂଗତରେ ମର୍ତ୍ତ୍ୟବୈକୁଣ୍ଠରେ ଅବସ୍ଥାନ କରିଛନ୍ତି ସେ।

ଶ୍ରୀକ୍ଷେତ୍ର ପାବନ କ୍ଷେତ୍ର । ପତିତ, କୁତ୍ସିତ, ଅବହେଳିତଙ୍କର ନାଥ ସେ। ଉତ୍କଳର ନେତା ସ୍ୱୟଂ ଜଗନ୍ନାଥ। ସେଥିପାଇଁ ସମସ୍ତେ କହନ୍ତି-- ବାପା ମୋ କାଳିଆସାଆନ୍ତ। ଆଉ ପୁଣି କହନ୍ତି "ଡର କାହାକୁ ଭୟ କାହାକୁ / ଠାକୁର ରଖିବେ ଚଉବାହାକୁ। "ଦେବସ୍ନାନ ପୂର୍ଣ୍ଣିମାରେ ବର୍ଷଯାକ ବନ୍ଦ ହୋଇ ରହିଥିବା ସ୍ୱର୍ଣ୍ଣକୂପ ଜଳସ୍ନାନ କରି ଜ୍ୱରରେ ପଡ଼ନ୍ତି ଜଗତନାଥ। ଆଉ କେହି ଭକ୍ତ କହନ୍ତି-- ଭକ୍ତ ବଳରାମ ଦାସଙ୍କୁ ନିଦରୁ ଉଠାଇ ପଣସ ଗଛ ମୂଳକୁ ଡାକି ନେଇଗଲେ ଜଗନ୍ନାଥ।"

ପାଚିଲା ପଣସକୁ ଦେଖାଇଦେଇ-- ଯା' ତୋଳି ଆଣିବୁ ବୋଲି ଇସାରା ଦେଲେ। ଦାସେ କହିଲେ-- ମୋତେ ଗଛଚଢ଼ା ଜଣାନାହିଁ। ନିଜ କାନ୍ଧରେ ଚଢ଼ାଇ ଗଛକୁ ଛାଡ଼ିଦେଲେ ଜଗନ୍ନାଥ। ଯେମିତି ଜଗନ୍ନାଥ ଦାସ ପାଚିଲା ପଣସ ତୋଳି ଆଣିଛନ୍ତି, ଜଗନ୍ନାଥ ଖାଇ ପକାଇଲେ। ପଣସ ପଡ଼ିବା ଶବ୍ଦରେ ରାଜକର୍ମଚାରୀ ଆସି ଦେଖେ, ପଣସ ପଡ଼ିଛି ବଳରାମ ଦାସ ପାଖରେ। ଜଗନ୍ନାଥ ଦଉଡ଼ି ଦଉଡ଼ି ପଳେଇଛନ୍ତି। ବେତର ଶକ୍ତ ପାହାର ବସିଗଲା ବଳରାମ ଦାସଙ୍କ ପିଠିରେ। ଟାଣି ଟାଣି କାରାଗାରରେ ରଖିଲେ । ତହିଁ ଆରଦିନ ରାଜଦରବାରରେ ବିଚାର ହେଲା ଦାସଙ୍କର। ଦାସେ ରାଗିଗଲେ। କହିଲେ--ତୋ ହୃଦୟ ତ କାଠପାଷାଣ ତୁ କି ବୁଝିବୁ ମୋ ଶରୀର ପୀଡ଼ା? ରାଜଦରବାରର ଅପମାନ?

ରାଜା କହିଲେ-- ଦାସଙ୍କୁ ମୁକ୍ତ କର। ତରତର ହୋଇ ବଡ଼ପଣ୍ଡା ଧାଇଁଆସି କହିଲେ-- ଜଗନ୍ନାଥଙ୍କୁ ପ୍ରବଳ ଜ୍ୱର। ଶରୀର ସାରା ବେତ୍ରର ଆଘାତ। ବଳିଆ ଦାସଙ୍କର ମାଡ଼ଖିଆ ଜ୍ୱର ଯେତେ ଦିନ ଯାଏଁ ଛାଡ଼ିଲା ନାହିଁ, ସେତେ ଦିନ ଯାଏଁ ଅଣସର ଘରେ ଜଗନ୍ନାଥ ଶୋଇ ରହିଲେ। ସର୍ବ ଘଟଣାର କିଛି ନା କିଛି ତତ୍ତ୍ୱ ଲୁଚି ରହିଛି। ବାର ମାସରେ ଷୋଳ ପ୍ରସିଦ୍ଧ ବେଶ ପଛରେ ଭକ୍ତମାନଙ୍କର ଅନେକ କାହାଣୀ ଲୁଚି ରହିଛି।

ମର୍ତ୍ତ୍ୟବୈକୁଣ୍ଠର ଠାକୁର ପୁରୁଷୋତ୍ତମ ଜଗନ୍ନାଥ। ଉତ୍ତମ ପୁରୁଷଟିଏ । ଜନ୍ମ ମୃତ୍ୟୁ ଚକ୍ରରୁ ବାଦ୍ ଯାଇ-ନାହାନ୍ତି ସିଏ । "ମର୍ତ୍ତ୍ୟମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ।" ଏହା ଭାଗବତର ବାଣୀ। ସେ କେମିତି ଏଥିରୁ ବାଦ୍ ଯିବେ ? ଶରୀର କ୍ଷୟଶୀଳ। ସେହି ନିୟମରେ ଦାରୁଦେବତାଙ୍କୁ ଶରୀର ତ୍ୟାଗ କରିବାକୁ ହୋଇଥାଏ। ଯେଉଁ ମାସ ଦୁଇଟି ଆଷାଢ଼ ମାସ ପଡ଼େ, ସେହି ବର୍ଷ ଚତୁର୍ଦ୍ଧା ମୂର୍ତ୍ତିଙ୍କର ନବକଳେବର ହୁଏ। ଜଗନ୍ନାଥ କହିଲେ-- ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ, ସୁଦର୍ଶନଙ୍କୁ ବୁଝାଇଥାଏ।

ଯୋଡ଼ା ଆଷାଢ଼ ବର୍ଷର ଚୈତ୍ର ଶୁକ୍ଳ ଦଶମୀ ତିଥିରେ ନବକଳେବର ପ୍ରସ୍ତୁତି ଆରମ୍ଭ ହୁଏ । ତିନିଠାକୁରଙ୍କର ତିନୋଟି ଆଜ୍ଞାମାଳ ଓ ରୁପାର ସୁଦର୍ଶନ ଚକ୍ର ଦଇତାମାନଙ୍କୁ ଅର୍ପଣ କରାଯାଏ । ଦଇତାପତିଗଣ ଜଗନ୍ନାଥଙ୍କର ନାଲିପାଟ ପିନ୍ଧି ଆଉ ମୁଣ୍ଡରେ ବାନ୍ଧି ଶ୍ରୀମନ୍ଦିରରୁ ଯାତ୍ରା ଆରମ୍ଭ କରନ୍ତି । ଠାକୁରଙ୍କର ଜୟଧ୍ୱନି ସହିତ ବିରାଟ ପଟୁଆର ବଡ଼ଦାଣ୍ଡରେ ଚାଲେ । ଗଜପତି ତାଙ୍କ ରାଜଗୁରୁଙ୍କ ହାତରେ ଗୁଆ ଦେଇ ଦଇତାପତିଙ୍କୁ ନିମନ୍ତ୍ରଣ ଜଣାନ୍ତି । ପଟୁଆର ସହ ଦଇତାପତିମାନେ ଜଗନ୍ନାଥ ମଠ ସମ୍ମୁଖରେ ପହଞ୍ଚନ୍ତି । ଦୁଇଦିନ ବିଶ୍ରାମ କରି ସେମାନେ ଯାଆନ୍ତି କାକଟପୁର ମଂଗଳାଙ୍କ ନିକଟକୁ । ଦଇତାପତିମାନଙ୍କୁ ମଂଗଳାଙ୍କ ପୂଜକମାନେ ପାଛୋଟି ନେଇଯା'ନ୍ତି । ଆଜ୍ଞାମାଳ ଓ ସୁଦର୍ଶନ ଚକ୍ର ମାଆଙ୍କର ଆସ୍ଥାନ ଉପରେ ରଖାଯାଏ । ପୁରୀରୁ ଅଣାଯାଇଥିବା ଭୋଗସାମଗ୍ରୀରେ ମାଆଙ୍କ ପୂଜା କରାଯାଏ । ଏହା ପୂର୍ବରୁ ଚୁଆ, ଚନ୍ଦନ, କର୍ପୂର ଲଗାଇ ୧୦୮ କଳସ ଜଳରେ ମାଆଙ୍କର ମହାସ୍ନାନ କରାଯାଏ । ତା'ପରେ ନୂତନ ପାଟବସ୍ତ୍ର ଓ ଫୁଲମାଳ ପିନ୍ଧି ବଡ଼ସିଂହାର ବେଶରେ ସଜ୍ଜିତ ହୁଅନ୍ତି ମାଆ । ତା' ପୂର୍ବରୁ ଜଗନ୍ନାଥଙ୍କଠାରୁ ଅଣାଯାଇଥିବା ନାଲିନେତ ମାଆ ମନ୍ଦିରର ଅଗ୍ରଭାଗରେ ବାନ୍ଧି ଦିଆଯାଏ । ଦଇତାପତିଗଣ ତା'ପରେ ମହାଦେବ ମନ୍ଦିରକୁ ଯାଇ ଗୁହାରିଆ ପଡ଼ନ୍ତି । ଦ୍ୱିତୀୟ ଦିନରେ ସ୍ୱପ୍ନାବିଷ୍ଟ ହୋଇ ପ୍ରଥମେ ସୁଦର୍ଶନ ଦାରୁ, ପରେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ଦାରୁର ସନ୍ଧାନ ପାଆନ୍ତି ।

ଦେବସ୍ନାନ ପୂର୍ଣ୍ଣିମା ଦିନ ଚତୁର୍ଦ୍ଧା ମୂର୍ତ୍ତି ସୁନାକୂଅ ଜଳ ୧୦୮ କଳସ ସ୍ନାନ କରିବା ପରେ ଗଜାନନ ବେଶରେ ଭକ୍ତମାନଙ୍କୁ ଦର୍ଶନ ଦିଅନ୍ତି । ଏହି ଗଜାନନ ବେଶ ପଛରେ ଲୁଚିରହିଛି ଭକ୍ତ ଗଣପତି ଭଟ୍ଟଙ୍କର କାହାଣୀ । ପରଂବ୍ରହ୍ମଙ୍କଠାରେ ନିଜର ଇଷ୍ଟ ଶ୍ରୀଗଣେଶଙ୍କୁ ଦର୍ଶନ କରିବାର ପ୍ରବଳ ଇଚ୍ଛା ନେଇ ସେ ମହାରାଷ୍ଟ୍ରରୁ ଆସିଥିଲେ । ଦାରୁବ୍ରହ୍ମଙ୍କଠାରେ ଗଜାନନଙ୍କୁ ଦେଖି ନ ପାରି ସେ ମନଦୁଃଖରେ ଫେରିଯାଉଥିଲେ । ପଣ୍ଡା ତାଙ୍କୁ ଫେରାଇଆଣିଲେ ଆଉ ସେ ଦର୍ଶନକଲେ ଜଗନ୍ନାଥ ଓ ବଳଭଦ୍ରଙ୍କଠାରେ କଳାଧଳା ଦୁଇଟି ହସ୍ତୀର ବଦନକୁ । ପରଂବ୍ରହ୍ମ ଦାରୁବ୍ରହ୍ମଙ୍କ ଠାରେ ନିଜର ଇଷ୍ଟ ଗଣପତିଙ୍କୁ ଦର୍ଶନ କରି କୃତାର୍ଥ ହେଲେ ଗଣପତି ଭଟ୍ଟ । ଆତ୍ମତୃପ୍ତି ଲାଭ କରି ସେ ଅନୁରୋଧ କରିଥିଲେ ପ୍ରତିବର୍ଷ ସ୍ନାନବେଦୀରେ ଏହି ଗଜାନନ ବେଶ ହେବାପାଇଁ । ସେହିଦିନଠାରୁ ସ୍ନାନବେଦୀରେ ପ୍ରଭୁଙ୍କର ଗଜାନନ ବେଶ ହୋଇଆସୁଛି । ଏହି ବେଶରେ ଦର୍ଶନ ଦେଇ ରାତ୍ରିରେ ସେ ଅଣସର ଗୃହକୁ ଗମନ କରନ୍ତି । ସେହିଦିନଠାରୁ ଆରମ୍ଭ ହୁଏ ମୂର୍ତ୍ତି ଗଠନ କାର୍ଯ୍ୟ । ବିଶ୍ୱକର୍ମା ଅବରୁଦ୍ଧ ଗୃହରେ ଏହି କାର୍ଯ୍ୟ କରିଥା'ନ୍ତି । ଆଷାଢ଼ ଶୁକ୍ଳ ପ୍ରତିପଦା



ଚିତ୍ରକର୍ମ କରାଯାଇଥାଏ । ମହାପ୍ରଭୁ ଅଙ୍ଗରାଗରେ ସଜ୍ଜିତ ହୋଇ ଅମାବାସ୍ୟା ଦିନ ଅଣସର ପିଣ୍ଡିରୁ ଜନସାଧାରଣଙ୍କୁ ଦର୍ଶନ ଦେବାପାଇଁ ଆସନ୍ତି । ନବଯୌବନ ଦର୍ଶନ ନାମରେ ତାହା ଖ୍ୟାତ । ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ରଥରେ ଚଢ଼ି ଭକ୍ତମାନଙ୍କ ସହ ମିଶି ଅପାର ଆନନ୍ଦ ପ୍ରଦାନ କରନ୍ତି ।

ଦିନ ବିଗ୍ରହମାନଙ୍କୁ ରଥରେ ବସାଇ ଶ୍ରୀମନ୍ଦିର ଚତୁଃପାର୍ଶ୍ୱରେ ସାତଥର ପରିକ୍ରମା କରାଯାଏ । ଏଗାରଦିନ ବ୍ୟାପୀ ପ୍ରତିଦିନ ୨୧୦୦ ଆହୁତି ଦିଆଯାଇ ଯଜ୍ଞ କରାଯାଏ । ଷୋଡ଼ଶ ଉପଚାରରେ ଦାରୁବିଗ୍ରହମାନଙ୍କର ପୂଜା ହୁଏ । ଚତୁର୍ଦ୍ଦଶୀ ପରେ ଅମାବାସ୍ୟା ଭୋଗ ହୁଏ । ଜିଉମାନଙ୍କର ନବବିଗ୍ରହରେ ବ୍ରହ୍ମ ଚନ୍ଦନ ତୁଳସୀ ସୁବାସିତ ପୁଷ୍ପ ସହ ସ୍ଥାପିତ ହୁଏ । ତାହାକୁ ଦର୍ଶନ ସ୍ପର୍ଶନ ନ କରିବା ପାଇଁ ବ୍ରହ୍ମ ସ୍ଥାପନ କରୁଥିବା ବ୍ୟକ୍ତିଙ୍କର ଚକ୍ଷୁରେ ଅନ୍ଧପୁଟୁଳି, ହସ୍ତକୁ ବହଳ ବସ୍ତ୍ର ଦ୍ୱାରା ଆବୃତ କରାଯାଏ ।

ପୁରାତନ ଘଟମାନଙ୍କୁ କୋଇଲି ବୈକୁଣ୍ଠର ଦେବ ଶ୍ମଶାନରେ ପାତାଳି କରାଯାଏ । ୩୬ ପାର୍ଶ୍ୱ ଦେବତା, ୧୨ ଘୋଡ଼ା, ୩ ସାରଥିଙ୍କୁ କୋଇଲି ବୈକୁଣ୍ଠ ବଗିଚାରେ ପାତାଳି କରାଯାଏ । ଏହାପରେ ଶ୍ରୀମନ୍ଦିର ଶୋଧ ହୁଏ । ଦଇତାମାନେ ଶୁଦ୍ଧିକ୍ରିୟା ବିଧିବିଧାନ ସହ ପାଳନ କରନ୍ତି । ଏହାପରେ ବିଗ୍ରହମାନଙ୍କର ଖଳି ଲାଗି, ବନକ ଲାଗି କାର୍ଯ୍ୟ ସମ୍ପାଦନ କରାଯାଏ । ବିଗ୍ରହମାନଙ୍କର ସପ୍ତ ଆବରଣ ଦିଆଯାଇଥାଏ । ପୁଷ୍ପ ଦ୍ରବ୍ୟ ଓ ସୁଗନ୍ଧ ତୈଳ ଆବରଣ, ପାଟବସ୍ତ୍ର ଆବରଣ, ଝୁଣା ଓ ତୈଳଯୁକ୍ତ ବଜ୍ର ଲେପ, ଘଣା, ଜୀନବସ୍ତ୍ର, ଖଳି ଏହି ସପ୍ତ ଆବରଣ ପରେ

ମର୍ତ୍ତ୍ୟମଣ୍ଡଳର ପ୍ରଭୁ ହେଲେ ମଧ୍ୟ ତାଙ୍କୁ ଘଟ ପରିବର୍ତ୍ତନ କରିବାକୁ ପଡ଼ିଥାଏ ମର୍ତ୍ତ୍ୟମଣ୍ଡଳର ନିୟମ ଅନୁଯାୟୀ ।

*ମାର୍ଫତ - ଗୁନିଅପା ଘର, କରଣସାହି, ନୟାଗଡ଼-୨, ନୟାଗଡ଼-୭୫୨୦୭୦*

---

## ବୁଦ୍ଧି ପରୀକ୍ଷାର ଉତ୍ତର

**୧** । ରାମ ଓ ଗଦାଧର **୨** । ଚାରିଶହ ମାପକୁ ଭର୍ତ୍ତି କରି ତାକୁ ସାତଶହ ମାପରେ ଢାଳିଦେବ । ପୁଣିଥରେ ଚାରିଶହ ମାପ ଭର୍ତ୍ତି କରି ଧୀରେ ଧୀରେ ସାତଶହ ମାପଟି ଭର୍ତ୍ତି ହେବା ପର୍ଯ୍ୟନ୍ତ ଢାଳିବ । ତେଣୁ ଚାରିଶହ ମାପରେ ଏକଶହ ଦହି ରହିଯିବ । ସେତକ ମୋତେ ପ୍ରଥମେ ଦେବ । ଆଉଥରେ ଚାରିଶହ ମାପ ଭର୍ତ୍ତି କରି ମୋତେ ଦେବ । ମୋଟ ଅଧଲିଟରେ ହେଲା ।

**୩** । କ) ପ୍ରଥମେ କୁକୁରକୁ ଖୁଆଇ । ଖ) ନେତାର ପଛରେ ଯିବ । ଗ) ଆଦିବାସୀଙ୍କ ପରି ଶୁଖିଲା କାଠ ଦୁଇଖଣ୍ଡ ଘଷି ବା ଚକ୍‌ମକି ପଥରକୁ ଘଷି । ଘ) ଫଳମୂଳ ଖୋଜି ଖାଇବ ।

**୪** । ୩୨ଟି ଚଢ଼େଇ, ୮ଟି ଠେକୁଆ ।

**୫** । ୧୧୧୨୫୧୯ । (ଭାଗଶେଷଟି ଭାଜକଠାରୁ ୧ କମ୍, ଭାଜକଗୁଡ଼ିକର ଗୁଣଫଳରୁ ୧ କମ୍)

**୬** । କ) ରାସ୍ତା, ଖ) ମାନଚିତ୍ରରେ, ଗ) ଥରେ ମାତ୍ର (କିନ୍ତୁ ରାଣୀ ପୋକ ବହୁବାର ଦଂଶନ କରିବାରେ), ଘ) ଛେଳିର କେବଳ ତଳପାଟିରେ ଦାନ୍ତ ଥାଏ ।



# ଗୁଳୁଗୁଳି

ଶ୍ରୀ ନିକୁଞ୍ଜ ବିହାରୀ ସାହୁ

ଖରା ସରିନାହିଁ, ବର୍ଷା ବି ଥିରି ଥିରି ଝରିନାହିଁ। ମେଘୁଆ ଭାରାକ୍ରାନ୍ତ ଆକାଶ। କେଉଁଠି ହେଲେ ଟିକେ ପବନ ନାହିଁ। ଗଛପତ୍ର ବି ନିଶ୍ଚଳ ହୋଇ ରହିଗଲେଣି। ଖରାର ତାତି ଅବଶ୍ୟ ସେତେଟା ନାହିଁ, ଅଥଚ ଦେହ ଝାଳରେ ଜୁଡୁବୁଡୁ ହୋଇଯାଉଛି। ଯେତେ ପଙ୍ଖା ବିଞ୍ଚଣା କଲେ ସୁଦ୍ଧା ଝାଳ ମରୁନି କି ଗରମ ସରୁନି। ଘରେ, ପଦାରେ, ତୋଟା, ଗଡ଼ିଆ କିମ୍ବା ନଈକୂଳ- -ସବୁଠି ସେଇ ଏକା ଅସମ୍ଭାଳ ଅବସ୍ଥା। ଏଭଳି ଅବସ୍ଥାରେ ବା କାମଦାମରେ କାହା ମନ ଲାଗନ୍ତା କିପରି ? ଏହା ହିଁ ଆମ ଗାଁ'ଗହଳିର ଗୁଳୁଗୁଳି। ବରଷର ଏତିକିବେଳେ ହିଁ ଥରେ ସାରା ଜଗତ ଗୁଳୁଗୁଳିର ଗଞ୍ଜଣାରେ ଅସ୍ତବ୍ୟସ୍ତ ହୋଇ ତ୍ରାହି ତ୍ରାହି ଡାକେ।

ଏଭଳି ଗୁଳୁଗୁଳି ସାଧାରଣତଃ ଆମ ରାଜ୍ୟରେ ଜୁନ୍, ଜୁଲାଇ ମାସରେ ଅନୁଭୂତ ହୁଏ। ଏହି ସମୟରେ ମହାପ୍ରଭୁ ଜଗନ୍ନାଥ ଅଣସର ଘରେ ବିଜେ କରୁଥିବାରୁ ଏହି ଗୁଳୁଗୁଳିକୁ ମଧ୍ୟ 'ଅଣସର ଗୁଳୁଗୁଳି' କହନ୍ତି। ତେବେ ଏଭଳି ବିଚିତ୍ର ପରିସ୍ଥିତିର କାରଣ କ'ଣ ?

ବାୟୁରେ ଅସଂଖ୍ୟ ଜଳୀୟବାଷ୍ପ କଣିକା ଅଦୃଶ୍ୟ ଅବସ୍ଥାରେ ଥାଏ। ଏକ ଥଣ୍ଡା ଜଳପୂର୍ଣ୍ଣ ଗ୍ଲାସର ବାହାରପଟେ ଯେଉଁ ଜଳବୁନ୍ଦା ସବୁ ଜମିଥାଏ, ତାହା ଏହି ଅଦୃଶ୍ୟ ଜଳୀୟବାଷ୍ପର ସୂଚନା। କୌଣସି ବାୟୁର ଜଳୀୟ ବାଷ୍ପ ଧାରଣର ସାମର୍ଥ୍ୟ ତା'ର ତାପମାତ୍ରା ଉପରେ ନିର୍ଭରଶୀଳ। ଗୁଳୁଗୁଳିକାଳୀନ ଉଷ୍ମ ପବନରେ ବିପୁଳ ଜଳ ବାଷ୍ପ ହୋଇ ବାୟୁରେ ମିଶୁଥିବାରୁ ବାୟୁ ଜଳୀୟବାଷ୍ପରେ ଭରପୂର ଥାଏ। ଏଭଳି ବାୟୁର ଜଳୀୟବାଷ୍ପ ଧାରଣର ସାମର୍ଥ୍ୟ ସମ୍ପୂର୍ଣ୍ଣ ପୂରି ଯାଇଥାଏ ଏବଂ ଏହା ଅନ୍ୟ କୌଣସି ଉତ୍ସରୁ ଅଧିକ ଜଳୀୟବାଷ୍ପ ଧାରଣ କରିବା ଅବସ୍ଥାରେ ନ ଥାଏ, ସୁତରାଂ ଯେତେ ପଙ୍ଖା, ବିଞ୍ଚଣା କଲେ ସୁଦ୍ଧା ଶରୀରରୁ ଝାଳ ବାଷ୍ପ ହୁଏନାହିଁ କି ଝାଳ ମରେନାହିଁ। ଜଳ ତରଳ ଅବସ୍ଥାରୁ ବାଷ୍ପ ହେବା ପାଇଁ କିଛି ତାପ ଗ୍ରହଣ କରିଥାଏ। ଆମ ଶରୀରରେ ଜମିଥିବା ଜଳ ଶରୀରରୁ ତାପ ଗ୍ରହଣ କରି ବାଷ୍ପ ହୋଇଯାଏ, ଯାହାକୁ ଆମେ ସାଧାରଣତଃ ଝାଳ ମରେ ବୋଲି କହୁ। ଶରୀରରୁ ଯେତେ ବୁନ୍ଦା ଜଳ ବାଷ୍ପ ହେଉଥାଏ, ଶରୀରୁ ସେତେ ଅଧିକ ତାପ ବାହାରକୁ ସ୍ଥାନାନ୍ତରିତ ହୋଇ ଶୀତଳତା ସୃଷ୍ଟି କରେ। ମାତ୍ର ଗୁଳୁଗୁଳି ସମୟରେ ତ ଝାଳ ସହଜରେ ବାଷ୍ପୀଭବନ ହୁଏନାହିଁ, ଶୀତଳତା ସୃଷ୍ଟି ହେବ କିପରି ? ଫଳରେ ଝାଳ ମରି ନ ପାରି ଦେହ ଉପରେ ଜମି ରହି ବିରକ୍ତିକର ଅନୁଭବ ସୃଷ୍ଟି କରେ।



# ପାଳଭୂତ

ରାଜଲକ୍ଷ୍ମୀ ତ୍ରିପାଠୀ

ପାଳଭୂତ ମୁଁ ପାଳଭୂତ
ଜଗି ରହିଛି ମୁଁ ସଭିଙ୍କ କ୍ଷେତ ।
ମୁଣ୍ଡେ ମୋ ନାହିଁ କାହାରି ଛାତ
କି ଖରା ଧୂପ କି ଅବା ଛାଇ
ଜଗିଛି ମୁହିଁ ସଭିଙ୍କ ଭାଇ ।

ମନେ ମୋ ନାହିଁ ଭୟର ଛାପ
ମୋ ଜଗୁଆଳ ମୋହରି ରୂପ
ଦୂରରୁ ଦେଖି ଚଢ଼େଇ ଦଳ
ଯାଆନ୍ତି ଉଡ଼ି କରିକି ଗୋଳ ।

ଯେତେକ ପଶୁ ଷଣ୍ଢ ବା ଛେଳି
କ୍ଷେତ ଆଗରେ କରନ୍ତି ମେଳି ।
କିଏ ସେ ଇଏ ରହିଛି ଚାହିଁ
ଜମାରୁ ଟିକେ ହଲୁ ବି ନାହିଁ ।

ଦୁଇ ହାତକୁ ଦେଇଛି ମେଲି
ଅବା ଆମକୁ ଦବ କି ଠେଲି
ଚାଲରେ ଚାଲ ଯିବା ପଳେଇ
କଳା ମୁହଁଟା ଚାହେଁ କଣେଇ
ସତେ କି ଅବା ଆସିବ ଧାଇଁ ।

ହସୁଥାଏ ମୁଁ ତୁହାକୁ ତୁହା
ସତେ ମୁଁ କେତେ ବୁଦ୍ଧିମତିଆ
କ୍ଷେତକୁ କରେ ମଜଭୁତିଆ
ପାଳଭୂତ ମୁଁ ପାଳଭୂତ
ଜଗି ରହିଛି ସଭିଙ୍କ କ୍ଷେତ ।

*ସ୍ୱତନ୍ତ୍ର ଦୃଷ୍ଟିହୀନ ବିଦ୍ୟାଳୟ, ଲକ୍ଷ୍ମୀପୋଷି (ବାରିପଦା), ମୟୂରଭଞ୍ଜ*

---

ଏତିକିବେଳେ ମଧ୍ୟ ଆକାଶରେ ମେଘ ଡାଙ୍କି ରହୁଥିବାରୁ ପୃଥିବୀରୁ ବିକିରିତ ତାପରଶ୍ମି ପୃଥିବୀ ଟପି ବାହାରକୁ ଯାଇ ପାରେନାହିଁ ଓ ବାୟୁମଣ୍ଡଳ ମଧ୍ୟରେ ହିଁ ରହିଯାଏ । ଫଳରେ ମେଘୁଆ ଆକାଶର ମଥା ତଳେ ଆମେ ଗରମ ଓ ଗୁଳୁଗୁଳିରେ ସିଝିଥାଉ ।

ଗୁଳୁଗୁଳିର ଏଭଳି ଗଞ୍ଜଣା ସତ୍ତ୍ୱେ ଏହା ଆମର ଜନଜୀବନ ଓ ସଂସ୍କୃତି ପରମ୍ପରା ସହିତ ଅନ୍ତରଂଗ ଭାବେ ଜଡ଼ିତ । ଏତିକିବେଳ ହିଁ ଆମ ଓଡ଼ିଆ ଘରେ ରଜ, ସାବିତ୍ରୀ, ସୁଦଶାବ୍ରତ ଆଦି ଓଷା ବ୍ରତ ପାଳିତ ହୁଏ ଓ ନାନା ପ୍ରକାରର ସ୍ୱାଦିଷ୍ଟ, କ୍ଷୀରି, ପିଠା ପ୍ରସ୍ତୁତ ହୁଏ । ରଜବେଳେ ଗାଁ ଝିଅ, ବୋହୂମାନେ ଗୁଳୁଗୁଳିକୁ ଖାତିରି ନ କରି ଦୋଳି ଖେଳରେ ମାତିଥାନ୍ତି । ଏହି ଗୁଳୁଗୁଳିରେ କୁଆଡ଼େ ଆମ୍ବ, ପଣସ, ସପୁରୀ ଇତ୍ୟାଦି ଫଳ ପାଚେ ବୋଲି ବିଶ୍ୱାସ କରାଯାଏ ।

*ଭୁବନେଶ୍ୱର*

# ପଣ୍ଡିତ ଚାଣକ୍ୟ

ଶ୍ରୀ ରଜନୀକାନ୍ତ ପାଡ଼ୀ

ମଗଧର ରାଜା ଧନାନନ୍ଦଙ୍କ ମାତୃବିୟୋଗ ଘଟିଲା । ମାଆଙ୍କ ଶୁଦ୍ଧକାର୍ଯ୍ୟ ନିମନ୍ତେ ପଣ୍ଡିତ ଚାଣକ୍ୟଙ୍କୁ ନିମନ୍ତ୍ରଣ କରାଗଲା । ଚାଣକ୍ୟଙ୍କ ରୂପ ଦେଖିବାକୁ କଳା । ରାଜା ଧନାନନ୍ଦ ତାଙ୍କୁ ଦେଖି କହିଲେ, "ମୋ ମାଆଙ୍କ ଶୁଦ୍ଧକାର୍ଯ୍ୟ କରିବେ ଜଣେ କଳା, କଦାକାର ପଣ୍ଡିତ !" ଚାଣକ୍ୟଙ୍କର ପାଣ୍ଡିତ୍ୟ ପ୍ରତି ଅବିଶ୍ୱାସ କରି ରାଜା ତାଙ୍କୁ ଫେରିଯିବାକୁ କହିଲେ। ପଣ୍ଡିତ ଚାଣକ୍ୟଙ୍କୁ ଅପମାନ ବୋଧହେଲା ; ତଥାପି ସେ ନୀରବରେ କିଛି ସମୟ ସେଠାରେ ଠିଆ ହୋଇ ରହିଲେ। ରାଜା ପୁଣି ତାଙ୍କ କର୍ମଚାରୀଙ୍କୁ ଆଦେଶ ଦେଲେ, "ଏ କଳା ପଣ୍ଡିତଙ୍କୁ ଏଠାରୁ ଧକ୍କା ଦେଇ ବାହାର କରିଦିଅ ! ମୋ' ମାଆଙ୍କ ଶୁଦ୍ଧକାର୍ଯ୍ୟକୁ ଜଣେ ସୁନ୍ଦର ବିଜ୍ଞ ପଣ୍ଡିତଙ୍କୁ ନେଇଆସ ।"

ଚାଣକ୍ୟ ତ ଭାରି ରାଗୀ। ରାଜା ବୋଲି ତାଙ୍କ ଆଗରେ ନୀରବରେ ସେ ରହିବା ଲୋକ ନୁହେଁ ସେ। ସିଏ ବି ରାଜାଙ୍କୁ ଯାହାତାହା କଥା କହିପକାଇଲେ। ରାଜା ଧନାନନ୍ଦ ଆହୁରି ରାଗିଗଲେ। ଏଥର ପଣ୍ଡିତ ଚାଣକ୍ୟ ରାଜା ଉଆସରୁ ବିଦାୟ ନେବାକୁ ବାହାରିଲେ। ଯିବାବେଳେ କହିଲେ, "ତୁମେ ମୋତେ ଅପମାନ କରିଛ। ତା'ର ପରିଣାମ ତୁମକୁ ଭୋଗିବାକୁ ହେବ। ମୁଁ ଆଜି ପ୍ରତିଜ୍ଞା କରୁଛି ନନ୍ଦବଂଶ ଧ୍ୱଂସ ନ ହେବାଯାଏଁ ମୋର ଏଇ ଚୁଟି ଏମିତି ମୁକୁଳା ରହିବ।" ରାଗ ତମତମ ହୋଇ ସେଦିନ ପଣ୍ଡିତ ଚାଣକ୍ୟ ବାହୁଡ଼ିଥିଲେ ସେଠାରୁ।

ଦିନେ ନଗର ବାହାରେ ଥିବା ଜଙ୍ଗଲ ରାସ୍ତାରେ ଚାଲି ଚାଲି ଯାଉଥିଲେ ପଣ୍ଡିତ ଚାଣକ୍ୟ। ଦେଖିଲେ ସୁନ୍ଦର ବାଳକଟିଏ ଗାଈ ଚରାଉଛି । ତା' ପ୍ରତି ଆକୃଷ୍ଟ ହୋଇପଡ଼ିଲେ ସେ। ତା' କପାଳରେ ଥିଲା ରାଜଲକ୍ଷଣ। ସେ ଭାବିଲେ, ଉକ୍ତ ବାଳକ ଦିନେ ରାଜ ସିଂହାସନ ପାଇଁ ଯୋଗ୍ୟ ହେବ। ବାଳକଟିର ନାମ, ଗ୍ରାମ, ପରିଚୟ ପଚାରି ବୁଝିଲେ ଚାଣକ୍ୟ। ବାଳକଟି ସବୁକଥା କହିଗଲା। ତା'ର ନାମ ଚନ୍ଦ୍ରଗୁପ୍ତ। ତା'ର ପିତା ରାଜା ମହାପଦ୍ମାନନ୍ଦ। ବୃଦ୍ଧାବସ୍ଥା ଯୋଗୁଁ ରାଜସିଂହାସନରୁ ଅବ୍ୟାହତି ନେଇ





ପଣ୍ଡିତ ଚାଣକ୍ୟଙ୍କର ଘର ପଞ୍ଜାବ ପ୍ରଦେଶର ତକ୍ଷଶିଳାରେ। ଚନ୍ଦ୍ରଗୁପ୍ତ ସେଠାରେ ଉଚ୍ଚଶିକ୍ଷା ପାଇଲେ। ଯୁଦ୍ଧବିଦ୍ୟା ଶିକ୍ଷା କଲେ। ଚନ୍ଦ୍ରଗୁପ୍ତ ଭାରି ବୁଦ୍ଧିମାନ୍। ଶିକ୍ଷାଦୀକ୍ଷା ଏବଂ ସବୁ କ୍ଷେତ୍ରରେ ସେ ଧୁରନ୍ଧର ହୋଇଗଲେ।

ଚାଣକ୍ୟ ତ କୂଟନୀତିରେ ସୁଦକ୍ଷ। ସେ କୌଶଳ କରି ଧନାନନ୍ଦଙ୍କୁ ସିଂହାସନରୁ ହଟାଇଥିଲେ। ପରେ

ସାରିଛନ୍ତି। ରାଜାଙ୍କର ଦୁଇଟି ରାଣୀ। ବଡ଼ ରାଣୀ ସୁନନ୍ଦାଙ୍କର ନଅ ପୁଅ। ବଡ଼ ପୁଅ ଧନାନନ୍ଦ, ବର୍ତ୍ତମାନ ମଗଧର ରାଜା ଅଛନ୍ତି। ସାନ ରାଣୀ ରାଜ ଉଆସର ଦାସୀ। ସେଇ ଦାସୀର ପୁଅ ଚନ୍ଦ୍ରଗୁପ୍ତ। ଦାସୀର ପୁଅ ବୋଲି ତାକୁ ଗାଈ ଜଗୁଆଳ କରାଯାଇଛି। ନିତି ସେ ଜଙ୍ଗଲ ଆସି ଗାଈ ଚରାଉଛି।

ବାଳକ ଚନ୍ଦ୍ରଗୁପ୍ତର ସବୁ କଥା ଶୁଣିଲେ ଚାଣକ୍ୟ। ସେ ତ ରାଜା ଧନାନନ୍ଦଙ୍କୁ ମଗଧର ରାଜସିଂହାସନରୁ ହଟାଇବାକୁ ପ୍ରତିଜ୍ଞା କରିଛନ୍ତି। ଏଇଟା ହିଁ ଏକ ସୁଯୋଗ ଭାବି ସେ ବାଳକ ଚନ୍ଦ୍ରଗୁପ୍ତକୁ ନେଇ ସିଂହାସନ ପାଇଁ ଯୋଗ୍ୟ କରାଇବେ ବୋଲି ଚିନ୍ତା କଲେ। ଦିନେ ସେ ବାଳକ ଚନ୍ଦ୍ରଗୁପ୍ତ ସହିତ ତା'ର ମାଆ ସାନରାଣୀ 'ମୁରା' ପାଖକୁ ଗଲେ। ତାଙ୍କୁ କହିଲେ, "ସେ ବାଳକ ଚନ୍ଦ୍ରଗୁପ୍ତର ଶିକ୍ଷାଦୀକ୍ଷା ଦାୟିତ୍ୱ ସବୁ ନେବେ। ଦିନେ ତାକୁ ମଗଧର ରାଜା କରାଇବେ।" ସାନରାଣୀ ମୁରାଙ୍କ ଠାରୁ ଅନୁମତି ପାଇ ପଣ୍ଡିତ ଚାଣକ୍ୟ ସେଦିନ ଚନ୍ଦ୍ରଗୁପ୍ତଙ୍କୁ ନେଇଗଲେ ତାଙ୍କ ଘରକୁ।

ପରେ ନନ୍ଦବଂଶର ନଅଭାଇଙ୍କୁ ମଧ୍ୟ ଶାସନ କ୍ଷମତାରୁ ହଟାଇ ଦେଇଥିଲେ। ଏହିପରି ନନ୍ଦବଂଶକୁ ନିଶ୍ଚିହ୍ନ କରି ସେ ତାଙ୍କର ପ୍ରତିଜ୍ଞା ପୂର୍ଣ୍ଣ କରି ବାନ୍ଧିଥିଲେ ମୁକୁଳା କେଶ। ରାଜ ଉଆସରେ ଦାସୀ ହୋଇ ରହିଥିବା ସାନ ରାଣୀଙ୍କୁ ଦେଇଥିବା ପ୍ରତିଶ୍ରୁତି ମଧ୍ୟ ପାଳନ କରିଥିଲେ ସେ। ସେ ଦିନର ଗାଈ ଜଗୁଆଳ ବାଳକ ଚନ୍ଦ୍ରଗୁପ୍ତଙ୍କୁ ମଗଧର ରାଜସିଂହାସନରେ ବସାଇଥିଲେ। ନନ୍ଦ ବଂଶର ପତନ ପରେ ଆରମ୍ଭ ହେଲା ମୌର୍ଯ୍ୟ ସାମ୍ରାଜ୍ୟ। ମାଆଙ୍କ ନାମ ଅନୁସାରେ ଚନ୍ଦ୍ରଗୁପ୍ତ ତାଙ୍କ ସାମ୍ରାଜ୍ୟର ନାମ 'ମୌର୍ଯ୍ୟ ସାମ୍ରାଜ୍ୟ' ରଖିଥିଲେ।

ଚନ୍ଦ୍ରଗୁପ୍ତ ପ୍ରଜାବତ୍ସଳ ସମ୍ରାଟ ହୋଇପାରିଲେ। ତାଙ୍କର ପ୍ରଧାନମନ୍ତ୍ରୀ ହେଲେ ପଣ୍ଡିତ ଚାଣକ୍ୟ। ପୂର୍ବେ ନାଳନ୍ଦା ଓ ତକ୍ଷଶିଳା ବିଶ୍ୱବିଦ୍ୟାଳୟର ଅର୍ଥନୀତି ଅଧ୍ୟାପକ ରୂପେ ସୁଖ୍ୟାତି ଅର୍ଜନ କରିଥିବା ପଣ୍ଡିତ ଚାଣକ୍ୟ ଶାସନକାର୍ଯ୍ୟରେ ଚନ୍ଦ୍ରଗୁପ୍ତଙ୍କୁ ଯଶସ୍ୱୀ କରାଇପାରିଥିଲେ। ସେ କିଭଳି ସଚ୍ଚୋଟ ଏବଂ ଜାତୀୟତାବାଦୀ ରାଜନୀତିଜ୍ଞ ଥିଲେ, ସେ ସମୟର ଏକ ଘଟଣାରୁ ସ୍ପଷ୍ଟ ବାରି ହୋଇପଡ଼େ।

ଥରେ ଗ୍ରୀସ୍ ଓ ମଗଧ ମଧ୍ୟରେ ସଂପର୍କ ବୃଦ୍ଧି ନିମନ୍ତେ ଆଲୋଚନା ଚାଲିଥିଲା। ଏଥିନିମନ୍ତେ ଗ୍ରୀସ୍‌ରୁ ସେନାପତି ସେଲିଉକସ୍ ଆସିଥିଲେ ପାଟଳୀପୁତ୍ର। ସେନାପତି ସେଲିଉକସ ଓ ପ୍ରଧାନମନ୍ତ୍ରୀ ପଣ୍ଡିତ ଚାଣକ୍ୟଙ୍କ ମଧ୍ୟରେ ଆଲୋଚନା ହେଲା ରାତ୍ର ସମୟରେ। ରାଜକାର୍ଯ୍ୟ ସଂପର୍କରେ ଯେତେବେଳେ ଆଲୋଚନା ଚାଲିଥିଲା, ସେତେବେଳେ ପ୍ରଧାନମନ୍ତ୍ରୀ ଜଳାଇଥିଲେ ଗୋଟିଏ ଦୀପ। ଆଲୋଚନା ସମାପ୍ତ ପରେ ଉଭୟଙ୍କ ମଧ୍ୟରେ ଯେତେବେଳେ ଘରୋଇ କଥାଭାଷା ଚାଲିଲା, ସେତେବେଳେ ସେ ଲଗାଇଲେ ଆଉ ଏକ ଦୀପ। ସେନାପତି ସେଲିଉକସ୍ ଏସବୁ ଲକ୍ଷ୍ୟ କରିଥିଲେ। ପାଟଳୀପୁତ୍ରରୁ ସ୍ୱଦେଶ ପ୍ରତ୍ୟାବର୍ତ୍ତନବେଳେ ସେ ପଣ୍ଡିତ ଚାଣକ୍ୟକୁ ପଚାରିଥିଲେ, "ମହାଶୟ, ଆପଣଙ୍କ ସହିତ ମୋର ଆଲୋଚନା ବେଶ୍ ସଫଳ ହୋଇଛି। ମୁଁ ଅତ୍ୟନ୍ତ ପ୍ରୀତ ହୋଇଛି। ତେବେ ଗୋଟିଏ କଥାରେ ମୁଁ ଏବେ ବି ସନ୍ଦିହାନ ରହିଛି।"

ଚାଣକ୍ୟ କହିଲେ, "ଆପଣଙ୍କ ମନରେ କ'ଣ ସନ୍ଦେହ ଅଛି, ଦୟାକରି ପ୍ରକାଶ କରନ୍ତୁ, ମୁଁ ତାହା ପରିଷ୍କାର କରିବାକୁ ଚେଷ୍ଟା କରିବି।"

ସେଲିଉକସ୍ କହିଲେ, "ଆମ ଦୁଇଜଣ ମଧ୍ୟରେ ବନ୍ଧୁତ୍ୱପୂର୍ଣ୍ଣ ଆଲୋଚନା ଚାଲିଥିବାବେଳେ ଯେଉଁ ଦୀପଟି ଜଳୁଥିଲା, ଆମର ଆଲୋଚନା ଶେଷ ହେବାପରେ ସେଇ ଦୀପଟିକୁ ଲିଭାଇ ଆପଣ ଅନ୍ୟ ଏକ ଦୀପ ଜଳାଇଥିଲେ। ଏଇ କଥାଟି ଉପରେ କ'ଣ ତାତ୍ପର୍ଯ୍ୟ ରହିଛି, ତାହାହିଁ ମୋର ସନ୍ଦେହ।"

ପଣ୍ଡିତ ଚାଣକ୍ୟ ହସିଲେ। କହିଲେ, "ମୋ' ଟେବୁଲ ଉପରେ ସର୍ବଦା ଦୁଇଟି ଦୀପ ରହିଥାଏ। ଗୋଟିକରେ ରାଜକୋଷ ଅର୍ଥରେ କିଣା ହୋଇଥିବା ଇନ୍ଧନ ଭରାଯାଏ। ଅନ୍ୟଟି ମୋ' ବ୍ୟକ୍ତିଗତ। ସେଥିରେ ମୁଁ ନିଜେ ଇନ୍ଧନ କିଣି ଭରିଥାଏ। ରାଜକୋଷର ଅର୍ଥ ସର୍ବସାଧାରଣଙ୍କର। ସେଥିରୁ ମୋ ବ୍ୟକ୍ତିଗତ ସ୍ୱାର୍ଥରେ କିଛି ଲଗାଇବାକୁ ଚାହେଁନି। ତେଣୁ ଆମ ଦିହିଁଙ୍କ ମଧ୍ୟରେ ସରକାରୀ ଆଲୋଚନା ସରିବାକ୍ଷଣି ସେ ଦୀପଟିକୁ ମୁଁ ଲିଭାଇଦେଲି। ତା'ପରେ ଜଳାଇଥିଲି ମୋ' ବ୍ୟକ୍ତିଗତ ଦୀପ। ସେଇ ଆଲୋକରେ ବସି ଆମେଦିହେଁ ବ୍ୟକ୍ତିଗତ କଥା ଭାଷା ହେଲେ।"

ସେଲିଉକସ୍ ଆଶ୍ଚର୍ଯ୍ୟରେ ଚାହିଁ ରହିଲେ ପ୍ରଧାନମନ୍ତ୍ରୀ ଚାଣକ୍ୟଙ୍କୁ। ତାଙ୍କ ସହ ହାତ ମିଶାଇ କହି ପକାଇଲେ, "ଧନ୍ୟ ଆପଣଙ୍କ ଅର୍ଥନୀତି ଓ ସ୍ୱଦେଶ ପ୍ରୀତି।"

ଚାଣକ୍ୟଙ୍କର ସାଧାରଣ ଜୀବନଯାପନ ଶୈଳୀ ଭାରି ସରଳ ଥିଲା। ସେ ଥିଲେ ଭାରି ସ୍ପଷ୍ଟବାଦୀ। ତାଙ୍କ ଜୀବନର ପ୍ରତି ପଦେ ପଦେ ଶିକ୍ଷା ଓ ଆଦର୍ଶ ପୂରି ରହିଥିଲା। ତାଙ୍କ ରଚିତ ନୀତିଶିକ୍ଷା ଶ୍ଳୋକ ଏ ଦେଶର ଜନମାନସକୁ ଆଦର୍ଶବାଦୀ କରିପାରିଛି। ଲୋକଙ୍କ ମୁଖରେ ଚାଣକ୍ୟ ନୀତି ଆଜି ବି ଉଚ୍ଚାରିତ ହେଉଛି। ଆଜି ବି ଚାଣକ୍ୟଙ୍କର ଅର୍ଥଶାସ୍ତ୍ର ଆମ ଦେଶର ଅମୂଲ୍ୟ ସମ୍ପତ୍ତି ହୋଇ ରହିଛି।

*ଓଡ୍ର ସାହିତ୍ୟ ସଂସଦ, ରାମଚନ୍ଦ୍ରପୁର (ପ୍ରିତଳ), ଗଞ୍ଜାମ*

---

**ଅଛି-ନାହିଁର ଉତ୍ତର--** ୧) ବୋତଲ ଉପର ଅସମାନ, ୨) ଗୋଟିଏ ପେନ୍‌ସିଲ୍ ନାହିଁ, ୩) କାର୍‌ର ଗୋଟିଏ ଲାଇଟ୍ ନାହିଁ, ୪) କଣ୍ଢେଇର କାନ ପାଖରେ ଗାର ନାହିଁ, ୫) ଝିଅର ଜାମା ଡିଜାଇନ ଭିନ୍ନ, ୬) ପିଲାଟିର ମୁହଁରେ ଥର୍ମୋମିଟର ନାହିଁ, ୭) ଘୋଡ଼ଣି ଉପର ଦାଗ ଅସମାନ ।

# ଅତି ଲୋଭର ଫଳ

ଡକ୍ଟର ତ୍ରିନାଥ ପଟ୍ଟନାୟକ

ବିଜୟନଗରରେ ହରି ଦାସ ନାମକ ଜଣେ ମାଳୀ ରହୁଥାଏ। ସୁନ୍ଦର ଫୁଲମାଳ ଓ ଫୁଲତୋଡ଼ା ତିଆରି କରିବାରେ ସେ ଧୁରନ୍ଧର। ନଗରର ଲୋକେ ପୂଜାପର୍ବ, ବିବାହ ଉତ୍ସବରେ ତାରିଠାରୁ ଫୁଲମାଳ ନେଉଥିଲେ। ମାଳି ମଧ୍ୟ ଲୋକମାନଙ୍କର ମନମୁତାବକ ସେବାରେ ନିଜକୁ ଖଟାଇଥାଏ। ଲୋକମାନଙ୍କର ଚାହିଦା ମୁତାବକ କାମ କରିବାରୁ ମାଳୀ ପ୍ରଚୁର ଧନ ରୋଜଗାର କରୁଥାଏ। ଧନୀଲୋକମାନେ ମୂଲ୍ୟ ବାଦେ ବେଶ୍ ପୁରସ୍କାର ମଧ୍ୟ ହରି ଦାସକୁ ଦେଉଥିଲେ; ତଥାପି ମାଳୀ ମନରେ ସୁଖ ନାହିଁ। ସେ ଜଣେ ଆଶାବାଦୀ। ଯେତେ ରୋଜଗାର କଲେ ମଧ୍ୟ ଆହୁରି ରୋଜଗାର କରିବା ପାଇଁ ତା' ମନ ବ୍ୟାକୁଳ ହୋଇଉଠୁଥାଏ। କେମିତି ଅଧିକ ଧନ ମିଳିବ, ସେଇ ଚିନ୍ତା ତା' ମନ ମଧ୍ୟରେ ସର୍ବଦା ଥାଏ।

ଦିନେ ହରି ଦାସ ଭାବିଲା-- ଯଦି କୌଣସିମତେ ରାଜାଙ୍କର ଶୁଭ ଦୃଷ୍ଟି ତା' ଉପରେ ପଡ଼େ, ତେବେ ତାର ଭାଗ୍ୟ ପରିବର୍ତ୍ତନ ହୋଇଯିବ। ରାଜାଘରେ ଏଥର ସେ ଭଲ ଭଲ ଫୁଲହାର ଦେବାକୁ ଲାଗିଲା। ମାଳୀର ହାର ତିଆରି ଓ ଫୁଲସଜ୍ଜା ରାଜାଙ୍କ ମନକୁ ବେଶ୍ ପାଇଲା। ସେ ମୋହିତ ହୋଇଗଲେ। ରାଜା ତାକୁ ବହୁତ ଧନରତ୍ନ ଦେଲେ। ଅଳ୍ପ ଦିନରେ ସେ ଧନୀ ହୋଇଗଲା। ତଥାପି ମାଳୀ ମନରୁ ଧନ ରୋଜଗାର କରିବାର ଆଶା ତୁଟିଲା ନାହିଁ। ଆଶା ଶେଷରେ ତୃଷ୍ଣାରେ ପରିଣତ ହେଲା।

ଧନ ନ ଥିବା ବେଳେ ତା' ହୃଦୟରେ ଯେଉଁ ଦୁଃଖ ଥିଲା, ଏତେ ଧନ ରୋଜଗାର କଲା ପରେ ସୁଦ୍ଧା ତା' ମନରେ ସେହି ଦୁଃଖ ରହିଲା। ଏତେ ଦନ ରୋଜଗାର କରିବା କି ଲାଭ ? ଦିନେ ହରି ଦାସ ଚିନ୍ତା କଲା, କେବଳ ଧନକୁ ଘରେ ଆବଦ୍ଧ କରି ରଖିଲେ କ'ଣ ହେବ ? ଚୋର, ଡକାୟତଙ୍କ ଭୟ ଅଛି। ଧନକୁ କୃଷି, ବାଣିଜ୍ୟ କିମ୍ବା ପଶୁପାଳନ ପ୍ରଭୃତିରେ ଲଗାଇଦେବି, ଫଳରେ ବର୍ଷ ଗୋଟାକରେ ଧନ ଦ୍ୱିଗୁଣ ହୋଇଯିବ। ଆଉ ମଧ୍ୟ ରାଜସେବା କରି ଦୁଇପଇସା ରୋଜଗାର କରୁଥିବି।

ମାଳୀ କାହାକୁ ବିଶ୍ୱାସ କରେନି। ଯଦି ବିଶ୍ୱାସ କରୁଥିବ ନିଜକୁ ନିଜେ ସିନା ! ସବୁ ବ୍ୟବସାୟ ସେ ନିଜେ ହିଁ ଦେଖାରଖା କରୁଥାଏ। କେତେ ଖଟି ବି ବ୍ୟବସାୟ ବଢ଼ିଯାଇଛି। ଖଟି ଖଟି ବ୍ୟାକୁଳ ହୋଇ ଉଠୁଥାଏ; ତଥାପି ବିଶ୍ୱାସ ରଖି କାହାକୁ ଦାୟିତ୍ୱ ଦେଇ ପାରୁ ନ ଥାଏ। ଜଣେ ବୋଲି ଲୋକ। କରିପାରେ ବା କ'ଣ ? ଏଣେ ବେପାର ବଣିଜରେ ପଶିଗଲେ ତେଣେ କୃଷି ଉଜୁଡ଼ିଯାଉଛି। କୃଷି ପ୍ରତି ମନ ବଳାଇଲେ ଗାଇ, ଗୋରୁ, ଛେଳି, ମେଣ୍ଢାଙ୍କ ଯତ୍ନନେବା ପାଇଁ ସମୟ ଅଣ୍ଟୁନାହିଁ। ସବୁ କାମରେ ମନ; ମାତ୍ର କୌଣସି କାମ ସଫଳତାର ସହ ହୋଇ ପାରୁ ନ ଥିବାରୁ କ୍ରମେ ସବୁ ବ୍ୟବସାୟରେ କ୍ଷତି ହେବାକୁ ଲାଗିଲା।

ରାଜା ମଧ୍ୟ ନିୟମିତ ଭାବେ ଫୁଲ ହାର ନ ପାଇବାରୁ ହରି ଦାସ ମାଳୀ ଉପରେ ଖପ୍ପା ହେଲେ। ରାଜା ଦେଖିଲେ ମାଳୀ ଆଉ ଗୋଟିଏ ହେଲେ କାମ କରିବା ପାଇଁ କ୍ଷମ ନୁହେଁ। ରାଜାଙ୍କ ମନରେ ରାଗ ଆସିଲା। ସେ ମାଳୀର ସବୁ ସମ୍ପତ୍ତିକୁ ଛଡ଼ାଇନେଲେ। ହରି ଦାସ ଏବେ ଗରିବ। ନଗର ସାରା ବୁଲୁଥାଏ।



ସବୁବେଳେ ବଡ଼ ବଡ଼ କଥା ଭାବିଲା ଓ ଆଶାରେ ହିଁ ବଞ୍ଚି ରହିଲା ଆଉ ସମସ୍ତଙ୍କୁ କଟୁ କଥା କହିଲା । ଏବେ ମାଳୀ ମନରେ ଗୋଟିଏ ଚିନ୍ତା-- କେମିତି ନିଜ ପେଟ ପୋଷିବ, ପରିବାର ଭରଣ ପୋଷଣ କରିବ । ଚୁପ୍‌ଚାପ୍ ବସିବା ଉଚିତ ନୁହେଁ ।

ଦିନେ ମାଳୀ କିଛି ଫୁଲମାଳ ନେଇ ଅନ୍ୟ ନଗରରେ ବିକିବା ପାଇଁ ଯାଉଥାଏ , ବାଟରେ ଗୋଟିଏ ନଦୀ ପଡ଼ିଲା । ସେ ନଦୀ କୂଳରେ ପହଞ୍ଚି ଦେଖିଲା ସାତୋଟି ମାଠିଆ ନଇ ପାଣିରେ ଭାସି ଭାସି ଯାଉଛି । ମାଠିଆଗୁଡ଼ିକର ମୁହଁରେ ଯଉ ମୁଦ ଦିଆଯାଇଛି । ଉପରେ ଡାଙ୍କୁଣି ପଡ଼ିଛି । ମାଳୀ ଭାବିଲା ନିଶ୍ଚୟ ଏଥି ମଧ୍ୟରେ କିଛି ଗୁପ୍ତଧନ ଅଛି । ପାଣି ଭିତରେ ପଶି ମାଠିଆଗୁଡ଼ିକ ଧରିବାକୁ ହରି ଦାସର ସାହସ ହେଉ ନ ଥାଏ । ମାଠିଆଗୁଡ଼ିକ ଅଚେତନ ହେଲେ ସୁଦ୍ଧା ସଚେତନ ଭଳି ଆଚରଣ କରୁଥାନ୍ତି । ଗୋଟିଏ ଧାଡ଼ିରେ ସ୍କୁଲର ଆଜ୍ଞାଧୀନ ଛାତ୍ର ଭଳି ମାଡ଼ି ଚାଲିଥାନ୍ତି । ମାଠିଆଗୁଡ଼ିକ ନିଶ୍ଚୟ ଧନରତ୍ନ ଭରା, ଦୈବୀଶକ୍ତି ଦ୍ୱାରା ପରିଚାଳିତ । ଏଗୁଡ଼ିକ ପୂଜା କରିବା ଉଚିତ । ସେ ମନେ ମନେ ସ୍ଥିର କଲା । ପାଖରେ ଥିବା ଫୁଲ ଦ୍ୱାରା ମାଳୀ ମାଠିଆଗୁଡ଼ିକ ପୂଜା ଆରମ୍ଭ କରିଦେଲା ।

ତା'ର ପୂଜାରେ ସତକୁ ସତ କୌଣସି ଅଦୃଶ୍ୟ ଦେବତା ସନ୍ତୁଷ୍ଟ ହୋଇଗଲେ । ମାଳୀକୁ ଆକାଶବାଣୀ ଶୁଣାଗଲା, "ମାଳୀ, ମୁଁ ତୁମ ପ୍ରତି ସନ୍ତୁଷ୍ଟ । ତୁମେ ଶେଷ ମାଠିଆ ଡାଙ୍କୁଣି ଖୋଲି ସାତଆଞ୍ଜୁଳା ରତ୍ନ ନେଇପାର । ମାତ୍ର ତା'ଠାରୁ ଗୋଟିଏ ବି ଅଧିକ ନୁହେଁ ।"

କ୍ରମେ ଗୋଟି ଗୋଟି ହୋଇ ଛଅଗୋଟି କଳସ ତା' ସାମ୍ନା ଦେଇ ଭାସି ଭାସି ଚାଲିଗଲା । ଶେଷ କଳସ ନିକଟକୁ ମାଳୀ ପହଁରି ପହଁରି ଗଲା ଓ ଯଉମୁଦ ଖୋଲି ଆଞ୍ଜୁଳା ଆଞ୍ଜୁଳା କରି ସାତ ଆଞ୍ଜୁଳା ରତ୍ନ ନିଜ ଗାମୁଛା କାନିରେ ବାନ୍ଧି ପକାଇଲା ; ତଥାପି ଲୋଭ ଛାଡୁ ନ ଥାଏ । ଦେଖିଲା ପାଖରେ କେହି ନାହାନ୍ତି । ଆଉ ଆଞ୍ଜୁଳାଏ ନେଇଗଲେ କ୍ଷତି ବା କଣ ?

ଏତିକି ଭାବି ସେ ଆଉ ଆଞ୍ଜୁଳାଏ ରତ୍ନ ଆଣିବା ପାଇଁ ଯେମିତି କଳସ ଭିତରେ ହାତ ପୂରାଇଛି, କଳସର ଡାଙ୍କୁଣି ପଡ଼ିଗଲା । କଳସଟି ପାଣି ସୁଅରେ ଭାସି ଭାସି ଚାଲିବାକୁ ଲାଗିଲା । ହାତ ଆଞ୍ଜୁଳାରେ ଥିବା ରତ୍ନଗୁଡ଼ିକ ପାଣିରେ ଡୁବିଗଲା । ମାଳୀ କଷ୍ଟେମଷ୍ଟେ ନଇ କୂଳକୁ ଆସି ଗଛ ଛାଇରେ ବସିପଡ଼ି ଚିନ୍ତା କଲା, "ଆହା ଅତି ଲୋଭରୁ ଏମିତି ଫଳ ମିଳେ ସିନା !"

*ନିଆଳି, କଟକ-୭୫୪୦୦୪*



# ମନ ବଦଳିଲା

ଶ୍ରୀ ସତ୍ୟ ନାରାୟଣ ଠାକୁର

ଟୁକୁନା ସମ୍ବଲପୁରରେ ରହେ । ତୃତୀୟ ଶ୍ରେଣୀର ଛାତ୍ର । ପଢ଼ିବାକୁ, ଖେଳିବାକୁ ଭଲପାଏ ବୋଲି ସବୁବେଳେ ଖୁସି ଜଣାପଡ଼େ । ତା'ପାଇଁ ଗୁରୁଜନମାନେ ମଧ୍ୟ ଆନନ୍ଦ ପାଉଥିଲେ ।

ଗ୍ରୀଷ୍ମ ଅବକାଶ ସମୟ ହୋଇଥାଏ । ଓମ୍‌ର ପରିବାର କଟକରୁ ସମ୍ବଲପୁର ବଦଳି ହୋଇ ଆସିଲେ । ସେମାନେ ଟୁକୁନାର ପଡ଼ୋଶୀ ଭାବେ ଘରଭଡ଼ା ନେଇ ରହିଲେ । ଓମ୍‌କୁ ତିନିବର୍ଷ ହୋଇଥାଏ । ପାଖାପାଖି ରହୁଥିବାରୁ ଓମ୍ ବାରମ୍ବାର ଟୁକୁନା ଘରକୁ ଚାଲିଆସେ । ଟୁକୁନା ସହିତ ଖେଳେ । କିଛିଦିନ ଭିତରେ ଉଭୟଙ୍କ ମଧ୍ୟରେ ଘନିଷ୍ଠତା ବଢ଼ିଲା । ଟୁକୁନା ମା'ବାପାଙ୍କର ଏକମାତ୍ର ସନ୍ତାନ ହୋଇଥିବାରୁ ଓ ଆଖପାଖରେ ଛୋଟପିଲା ନ ଥିବାରୁ ଓମ୍ ସହିତ ମିଶିଲେ ଖୁସି ଅନୁଭବ କରୁଥିଲା । ଟୁକୁନା ପାଇଁ ତା'ବାପା କେତେ ରକମର ଖେଳଣା କିଣିଦିଅନ୍ତି; କିନ୍ତୁ ଟୁକୁନାର ଗୋଟିଏ କୁଅଭ୍ୟାସ ଯେ ବାପାଙ୍କ ପାଖରେ ଅରଜି କରି ଯେଉଁ ଖେଳଣା ପାଏ, ତାକୁ ନ ଖେଳି ସାଇତି କରି ରଖିଦିଏ । ତା'ର ଭାବନା ଯେ ଖେଳିଲେ ଖେଳଣାଟି ନଷ୍ଟ ହୋଇଯିବ । ମା'ବାପା କେତେ ବୁଝାନ୍ତି ଖେଳିବା ଜିନିଷକୁ ଖେଳିବା ପାଇଁ, ସେମାନଙ୍କ ବିଷୟରେ ଜାଣିବା ପାଇଁ ହେଲେ କିଛି ଲାଭ ହୁଏନାହିଁ ।

ଦିନକର କଥା, ଟୁକୁନାର ବାପା ଅଫିସରୁ ଫେରିବାବେଳେ ଉଡ଼ାଜାହାଜଟିଏ କିଣି ଆଣିଲେ । ସେହି ସମୟରେ ଓମ୍ ସହିତ ମିଶି ସେ ଖେଳୁଥାଏ । ବାପା ତାକୁ ଉଡ଼ାଜାହାଜଟି ବଢ଼େଇଦେବାରୁ ସେ ଖୁସି ହୋଇଗଲା । ଓମ୍ ବି ଉଡ଼ାଜାହାଜ ଦେଖିବ ବୋଲି ଅଭିମାନ କଲା । ଟୁକୁନାର ବାପା ଟୁକୁନାକୁ କହିଲେ ଉଡ଼ାଜାହାଜକୁ ଓମ୍‌କୁ ଟିକେ ଧରିବାକୁ ଦେବା ପାଇଁ । ଟୁକୁନା ସେପରି ନ କରି ସାଇତି କରି ରଖିବାକୁ ଭିତରକୁ ନେଇଗଲା । ଓମ୍ ତା'ଠୁ ଝାମ୍ପିଆଣି ଦୌଡ଼ିବା ଆରମ୍ଭ କରିବାରୁ ତା'ହାତରୁ ଖେଳନାଟି ପଡ଼ି ଭାଙ୍ଗିଗଲା । ଟୁକୁନା ରାଗିଯାଇ କାନ୍ଦି ଓମ୍‌ର ପିଠିରେ ଚାପୁଡ଼ାଏ ମାରିଲା । ସେ କାନ୍ଦି କାନ୍ଦି ତା'ଘରକୁ ପଳାଇଲା ।



ଟୁକୁନାର ବାପାମା' ପୁଅର ଏଭଳି ବ୍ୟବହାରରେ ଦୁଃଖପ୍ରକାଶ କଲେ । ରାତି ହେଲା । ଟୁକୁନା ବାପାମା'ଙ୍କ ମଝିରେ ଶୋଇଥାଏ । ତା'କୁ ସ୍ୱପ୍ନ ହେଲା । ଦୀର୍ଘ ଦିନରୁ ସେ ଯେଉଁ ଖେଳଣାଗୁଡ଼ିକ ରଖିଥିଲା, ଆଲମାରିରେ ସମସ୍ତେ ମନ ଦୁଃଖ କରିଛନ୍ତି । କେହି ତା' ସହିତ କଥା ହେଉନାହାନ୍ତି । ମୁହଁ ଫେରାଇ ନେଉଛନ୍ତି । ବରପିଲା,



କନିଆଁ, କାର୍, ବାଇକ୍, ରେଳଗାଡ଼ି, ହେଲିକପ୍ଟର, ବେନ୍‌ଟେନ୍, ସ୍ପାଇଡରମ୍ୟାନ୍, ହାତୀ, ଘୋଡ଼ା, ଭାଲୁ, ମାଙ୍କଡ଼, ବାଘ, ହରିଣ, ଶୁଆ-- ସମସ୍ତେ ଗୋଟି ଗୋଟି କରି ତା' ଆଲମାରିରୁ ବାହାରି ଯାଉଛନ୍ତି ଓମ୍ ଘରକୁ। ଟୁକୁନା କାନ୍ଦି ପକାଇ ସମସ୍ତଙ୍କୁ ନେହୁରା ହେଲା, ତାକୁ ଛାଡ଼ି ନ ଯିବା ପାଇଁ; କିନ୍ତୁ କେହି ତା' କଥା ମାନିଲେ ନାହିଁ। ତା' ବାପା ଆଣିଦେଇଥିବା ଉଡ଼ାଜାହାଜ ଭାଙ୍ଗିଯାଇଥିବାରୁ କେବଳ ଭୁଁ ଭୁଁ ଗର୍ଜନ କରୁଥିଲା; କିନ୍ତୁ ଉଡ଼ି ପାରୁ ନ ଥିଲା। ତାକୁ ଦେଖି ଟୁକୁନା କହିଲା, "ତୁ ଯାଆନା। ଆଜି ତ ତତେ ବାପା ଆଣିଛନ୍ତି, ମୋ ପାଖରେ ରୁହ।" ଉଡ଼ାଜାହାଜ କହିଲା, "ତମ ଭଳି ପିଲାମାନଙ୍କ ପାଖରେ ଆମେ ରହିବାକୁ ଚାହୁଁନା। ତମେ ଆମର ମୂଲ୍ୟ ବୁଝିପାରିନ, ମହତ୍ତ୍ୱ ଜାଣିପାରିନ; କେବଳ ନିଜର ପ୍ରକୃତି ପାଇଁ ଆଲମିରା ଭିତରେ ବନ୍ଦ କରି ରଖିଛି। ଆମେ ତ ଖେଳଣା। ଆମକୁ ମନଭରି ଖେଳିଲେ ଆମ ଠାରୁ ଅନେକ ଜିନିଷ ଶିକ୍ଷା ମିଳିଥାଏ। ଫଳରେ ଶିକ୍ଷା ପାଇଲା ଲୋକ ଧନ୍ୟ ହୋଇଯାଏ ଏବଂ ଶିକ୍ଷାଦାତା ମଧ୍ୟ ଧନ୍ୟ ହୋଇଯାଏ; କିନ୍ତୁ ତମ ପାଖରେ ରହି ଆମେ ଆମର ଗୁରୁତ୍ୱ ହରାଉଛୁ। ଯିଏ ଆମର ମହତ୍ତ୍ୱ ବୁଝିଛି, ତାକୁ ତମେ କଷ୍ଟ ଦେଇଛ। ବିଚରା ଓମ୍ ପାଖର ରହିଲେ ତା'ସହିତ ଆମେ ସମସ୍ତେ ଖେଳିବୁ। ଖୁବ୍ ମଜା ଲାଗିବ।"

କିଛି ସମୟ ପରେ ଟୁକୁନାର ଆଲମାରି ଖେଳଣାଶୂନ୍ୟ ହୋଇଗଲା। ସେ ଯେତେ ଡାକିଲା, କେହି ଆଉ ଫେରିଲେ ନାହିଁ। ଦୁଃଖ ଓ କୋହରେ ସେ ଜୋର୍‌ରେ ପାଟି କରିବାରୁ ବାପା, ମା' ନିଦରୁ ଉଠିପଡ଼ିଲେ। ଟୁକୁନା ନିଦରେ ବାଉଳି ହେଉଥିବାରୁ ତାକୁ ସାଷ୍ଟମ କଲେ। ସେ ବି ଉଠି ବସିଲା।

ଏତିକିବେଳେ ପ୍ରଭାତ ହୋଇସାରିଥାଏ। ସେ ପ୍ରାତଃ ସ୍ମରଣ ନ କରି ଆଗେ ଧାଇଁଲା ଆଲମାରି ଆଡ଼କୁ। ଖୋଲି ଦେଖେ ତ ସବୁ ଖେଳନା ନିଜ ନିଜ ସ୍ଥାନରେ ଅଛନ୍ତି; କିନ୍ତୁ ସେମାନଙ୍କ ରଙ୍ଗ ଉଡ଼ିଗଲା ଭଳି ତାକୁ ଲାଗିଲା। ସେ ଦୁଃଖପ୍ରକାଶ କଲା। ନିତ୍ୟକର୍ମ ସାରି ପୂଜା କଲାପରେ ମା' ଜଳଖିଆ ପାଇଁ ଡାକିଲେ। ସେ ଜଳଖିଆ ନ କରି ପ୍ରଥମେ ଆଲମାରି ଭିତରୁ ଓମ୍‌ର ଦୁଇଟି ପ୍ରିୟ କଣ୍ଢେଇ ବାହାର କରି ଓମ୍ ଘରକୁ ଗଲା। ଓମ୍‌କୁ ସ୍ନେହ କରି ତା' ହାତକୁ ଖେଳଣା ଦୁଇଟିକୁ ବଢ଼େଇଦେଲା। ଓମ୍ ଆଗ୍ରହ ସହିତ ଗ୍ରହଣ କରି ଥେଇ ଥେଇ ନାଚିବାକୁ ଲାଗିଲା। ଓମ୍ ଓ ଟୁକୁନାର ମା' ଏହି ଦୃଶ୍ୟ ଦେଖି ମୁରୁକି ହସୁଥିଲେ। ସେମାନଙ୍କ ମୁହଁକୁ ଦେଖି ଟୁକୁନା ଲାଜେଇ ଯାଇ ଓମ୍‌ର ହାତ ଧରି ଗାଁ' ଦାଣ୍ଡ ଆଡ଼କୁ ଖେଳିବାକୁ ବାହାରିଲା।

*ବାଲିବନ୍ଧା, ସମ୍ବଲପୁର*



# ସବୁ ନିଜର

ଶ୍ରୀ ଜଗନ୍ନାଥ ପଣ୍ଡା

ଫଗୁଣ ଆସିଛି ମେଲଣ ନେଇ
ବିମାନରେ ଶୋଭା ରାଇ କହ୍ନେଇ ।
ମେଲଣ ପଡ଼ିଆ ଫାଟି ପଡୁଛି
ରଙ୍ଗିଆ ପିଲାଙ୍କ ଧାଡ଼ି ଛୁଟୁଛି ।
ଅବିର ଖେଳନ୍ତି ସାଥୀଙ୍କୁ ଡାକି
ରଙ୍ଗ ଦେଖି କିଏ ଯାଏ ତରକି ।
ବରଷକେ ଥରେ ଦୋଳ ପୂନେଇଁ
ଛାଡ଼ିଲେ ଏ ମଜା ପାଇବା ନାହିଁ ।
ସମବୟସୀଙ୍କ ସାଥିରେ ଖେଳି
ଭୁଲିଯିବା ରାଗ ପୂରୁବ କଳି ।
ଚଣା ଉଖୁଡ଼ାର ଭୋଗ ଖାଇବା
ଏ ସାଇ ସେ ସାଇ ନାଚି ବୁଲିବା ।
କିଏ ସାତ ପୁଣି କିଏ ସତର
ହସିଦେଲେ ସିନା ସବୁ ନିଜର ।
ପୂରୁବ କଥାକୁ ଯିବାନି ଭୁଲି
ପାରିବା ପରବ ସଭିଏଁ ମିଳି।

*ସରପଦା, ଭଣ୍ଡାରି ପୋଖରୀ, ଭଦ୍ରକ*

# ଅତ୍ୟାଚାରୀ କୁଆର କଥା

ଶ୍ରୀ ରତ୍ନାକର ଦାସ

ପୋଖରୀରେ ବୁଡ଼ି ବୁଡ଼ି ମାଛ ଖାଉଥିଲା ପାଣିକୁଆ । ସୂର୍ଯ୍ୟକିରଣରେ ଝାଡ଼ିଝୁଡ଼ି ହେବା ପାଇଁ ମଝିରେ ମଝିରେ ଆସୁଥିଲା ପୋଖରୀ ହୁଡ଼ାକୁ । କିଛି ସମୟ ବସି ପୁଣି ବୁଡୁଥିଲା ପାଣିରେ ।

ଉଡ଼ି ଉଡ଼ି ଯାଉଥିବା କୁଆଟି, ପାଣିକୁଆର ମାଛ ଖାଇବା ଦେଖି ଅଟକିଗଲା । ପୋଖରୀ ହୁଡ଼ାରେ ବସି ପାଣିକୁଆକୁ କହିଲା-- ଏ ଭାଇ ! ଆମେ ଦୁହେଁ ତ ଗୋଟିଏ ଜାତିର । ତମ ଦେହର ରଂଗ ଆଉ ମୋ ଦେହର ରଂଗ ବି ସମାନ; କିନ୍ତୁ ତମ ଭଳି ମୁଁ ତ ପାଣିରେ ବୁଡ଼ି ପାରିବି ନାହିଁ । ତେଣୁ ତମେ ମତେ ମାଛ ଦି'ଚାରିଟା ଦିଅ । ମୁଁ ତମକୁ ଆଉ କ'ଣ ଦେଇ ତମର ଋଣ ପରିଶୋଧ କରିଦେବି ।''

କୁଆର କଥା ରଖି ପାଣିକୁଆ ତାକୁ ମାଛ କେତେଟା ଦେଲା ଓ କୁଆ ସେ ମାଛତକ ଖାଇ ଉଡ଼ିଗଲା ଖୁସିରେ ।

ତା'ପରଦିନ ଠିକ୍ ସେଇ ସମୟରେ କୁଆ ତା ଛୁଆ ଦୁହିଁଙ୍କୁ ନେଇ ପହଞ୍ଚିଲା ସେଇ ପୋଖରୀ କୂଳରେ । ପାଣିକୁଆକୁ ପୁଣି ମାଛ କେତେଟା ମାଗିଲା ତା'ଛୁଆ ଦୁହିଁଙ୍କ ପାଇଁ । ବିଚରା ପାଣିକୁଆର ଦୟା ଉପୁଜିଲା କାଉର ଛୁଆ ଦୁହିଁଙ୍କୁ ଦେଖି । ମାଛ କିଛି ଦେଲା ସେମାନଙ୍କୁ । ମା'ଛୁଆ ଖୁସିରେ ଖାଇ ଉଡ଼ିଗଲେ ପୂର୍ବଦିନ ଭଳି ।

ପୁଣି ତହିଁଆର ଦିନ କୁଆ ତା'ର ଭାଇଭଉଣୀଙ୍କୁ ସାଥିରେ ନେଇ ପହଞ୍ଚିଲା ସେଇ ପୋଖରୀ ପାଖରେ ।



ଉହାଡ଼ରେ ଲୁଚି ରହିଥିବା ଶିକାରୀ ସଙ୍ଗେ ସଙ୍ଗେ ଜାଲର ସୂତାକୁ ଟାଣି ଧରିଲା ଯେ ସମସ୍ତେ ବାନ୍ଧି ହୋଇଗଲେ ଜାଲରେ ।

କିଏ କାହାକୁ କ'ଣ କହିବା ଆଗରୁ ଶିକାରୀ ତା' ଅଖାମୁଣି ଧରି ପହଞ୍ଚି ଯାଇଥିଲା ସେଠାରେ । କୁଆମାନେ ବୁଝିଗଲେ ତାଙ୍କର ଦୋଷ । ଅନ୍ୟକୁ କଷ୍ଟ ଦେଇଥିବାରୁ ସେମାନଙ୍କୁ ଏଭଳି ଦଶା ଭୋଗିବାକୁ ହେଲା । ପାଣିକୁଆ କିନ୍ତୁ ସେମାନଙ୍କ ଅବସ୍ଥା ଦେଖି ଦୁଃଖ କରୁଥିଲା ।

*ଉତ୍କଳମଣି ଶିଶୁ ସାହିତ୍ୟ ସମିତି , ଶଙ୍ଖୋ , କେନ୍ଦୁଝର - ୨ ୨*

ଏମାନଙ୍କୁ ମାଛ ଦେବା ପାଇଁ କହିବାରୁ ପାଣିକୁଆ ରୋକ୍‌ଠୋକ୍ ମନା କରିଦେଲା । ଖୁବ୍ ଖାତରରେ ଭାଇଭଉଣୀଙ୍କୁ ଡାକି ନେଇଥିବା କୁଆକୁ ଭାରି ବାଧିଲା ପାଣିକୁଆର କଥାଟା । ତାକୁ ଏମିତି ସବୁଦିନ ମାଛ ମାଗିବା ଠିକ୍ କି ଭୁଲ୍ ନ ଭାବି କାଉ ରାଗିଗଲା ହଠାତ୍ । ଭାଇଭଉଣୀଙ୍କୁ ଡାକିନେଇ ଉଡ଼ିଗଲା କିଛି ଦୂରକୁ । ସେମାନଙ୍କୁ କହିଲା-- ଆମେ ଏ ତାଳପତ୍ର ଉହାଡ଼ରେ ଲୁଚି ରହିବା କିଛି ସମୟ । ପାଣିକୁଆ ବସାକୁ ଫେରିଲେ ଆମେ ତା'ପଛେ ପଛେ ଉଡ଼ିଯାଇ ତାକୁ ଆକ୍ରମଣ କରିବା ।

ଭାଇ-ଭଉଣୀ ଏକଥାରେ ବାରଣ ନ କରି 'ହଁ' ଭରିଲେ । ପାଣିକୁଆ ମାଛ ଖାଇସାରି ତା'ବସା ଅଭିମୁଖେ ଉଡ଼ି ଉଡ଼ି ଯିବାରୁ ଏମାନେ ମଧ୍ୟ ତାକୁ ଲକ୍ଷ୍ୟ କରି ଉଡ଼ି ଉଡ଼ି ଚାଲିଲେ ।

ସିଏ ବସାରେ ପହଞ୍ଚିବା ପରେ ଏମାନେ ତାକୁ କିଛି କଥା ନ ପଚାରି ନ କହି ଖୁମ୍ପିବାକୁ ଲାଗିଲେ । ସିଏ ଯେତେ ଅନୁରୋଧ କଲେ ବି ଭାଇ-ଭଉଣୀ ତା' କଥାକୁ ନ ବୁଝି ନ ଶୁଝି ଲହୁଲୁହାଣ କରିଦେଲେ ତାକୁ । ଫେରିଆସିଲେ ଗଡ଼ ଜୟ କଲା ଭଳି ଗର୍ବରେ ।

ବାଟରେ ଦେଖିଲେ ଗୋଟେ ଗଛ ପାଖରେ କିଛି ଚାଉଳ ବୁଣି ହୋଇ ପଡ଼ିଛି । ତଳକୁ ଓହ୍ଲାଇଲେ ସମସ୍ତେ । ଖୁବ୍ ଖୁସିରେ ଖାଇବାକୁ ଲାଗିଲେ ସେ ଚାଉଳକୁ । ଗଛ

---

# ରଙ୍ଗ ରଙ୍ଗେଲି

ଶ୍ରୀ ଶିବ ପ୍ରସାଦ ରାଉତ

ବରଷକେ ଥରେ ବାରାତି ସଜେଇ
ରଙ୍ଗର ପସରା ନେଇ
ନାଲି , ନେଳି , ପୀତ ଧବଳ , ସବୁଜ
ଅବିର ଡାଲା ସଜେଇ ।
ଫଗୁଣର ଫଗୁ ତାମସା ପରବ
ବରଷକେ ଉପଗତ
ଦଳେ ଦଳେ ଯୁବା ଜବର କରି
ସାଥେ ନେଇ ରଙ୍ଗ ଅସ୍ତ୍ର ।
ବିଚିତ୍ର ପୋଷାକ ପରିଧାନ ଦେହେ
ଟୋପି , ଚଷମା ବେହରି
ନଳ , ପିଚକାରୀ ରଙ୍ଗର ପୁଟୁଳି
ସଜି ଯାଆନ୍ତି ବାହାରି ।



ପ୍ରଭୁ ଖେଳୁଥିଲେ ଗୋପଦାଣ୍ଡ ତୁଲେ
ଗୋପୀ, ଗୋପାଳଙ୍କ ସଙ୍ଗେ
ସେଇ ରଙ୍ଗ ଆଜି ଭରିଯାଇଅଛି
ପ୍ରତି ଯୁବ ଅଙ୍ଗେ ଅଙ୍ଗେ।
ରଙ୍ଗଖେଳ ଏ ଯେ ମୈତ୍ରୀର ପର୍ବ
ଭାଙ୍ଗଇ ମାନ, ଗୁମର
ଅପଡ଼ ବିବାଦ ତୁଟିଯାଏ ଆଜି
ରାଗ, ରୁଷା, ବିରାଦର।
ନାତି ବୋଳିଦିଏ ମୁଣ୍ଡଫଟା ରଙ୍ଗ
ଅଜାଙ୍କ ପକ୍ୱ କେଶେ
ଆଇ ଫିଙ୍ଗିଦିଏ ନେଳିମିଶା ପାଣି
ନାତିର ଜୋକର ବେଶେ।

*ବଛଦା, ଜଗନ୍ନାଥପୁର, ବାସୁଦେବପୁର, ଭଦ୍ରକ*



# ମୟୂର

ଶ୍ରୀ ଗୋବିନ୍ଦ ପ୍ରସାଦ ଭଟ୍ଟାଚାର୍ଯ୍ୟ

ପିଲାମାନେ, ତମେ ସମସ୍ତେ 'ବନ୍ଦେ ଉତ୍କଳ ଜନନୀ'ର କବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କୁ ଜାଣିଥିବ। ଏକଦା ସେ ମୟୂରର ଶୋଭା ଦେଖି ଅତିଶୟ ଖୁସିରେ ଗାଇଉଠିଲେ--

"ନୂଆ ମେଘ ଦେଖି ନାଟେଣୀ ମୟୂର
କରୁଛି ବିଚିତ୍ର ନାଟ,
ଚନ୍ଦ୍ରିକା ଦିଶୁଛି ଜରି ବୁଟାଦାର
ସତେ ନୀଳାମ୍ବରୀ ପାଟ।।"

ଆକାଶର କଳାହାଣ୍ଡିଆ ମେଘକୁ ଦେଖିଲେ ମୟୂର ନାଚେ। ମୟୂର ନାମରେ ଆମ ରାଜ୍ୟର ଗୋଟିଏ ଜିଲ୍ଲା ମୟୂରଭଞ୍ଜ। ତା'ର ସଦର ମହକୁମା ବାରିପଦାରେ ଭଞ୍ଜବଂଶୀୟ ରାଜା ରାଜୁତି କରୁଥିଲେ। ମୟୂରରୁ ମୟୂରଭଞ୍ଜ ନାମର ସୃଷ୍ଟି। ମୋଗଲସମ୍ରାଟ ଶାହାଜାହାନଙ୍କ ସିଂହାସନର ନାମ ଥିଲା ମୟୂର ସିଂହାସନ। ଏହା ବହୁ ମଣିମାଣିକ୍ୟଖଚିତ ସିଂହାସନ ଥିଲା। ଏହି ସିଂହାସନକୁ ନେଇ ବହୁ କଳି। ଖ୍ରୀ: ୧୬୩୫ରେ ମୋଗଲସମ୍ରାଟ ଶାହାଜାହାନ ପ୍ରଥମ କରି ଏହି ମୟୂର ସିଂହାସନରେ ବସିଥିଲେ। ୧୬୩୯ ଖ୍ରୀଷ୍ଟାବ୍ଦରେ ନାଦିରଶାହା ମୋଗଲ ସାମ୍ରାଜ୍ୟ ଆକ୍ରମଣ କରି ଭାରତରୁ ଏହି ବହୁମୁଲ୍ୟ ମଣିମାଣିକ୍ୟ ଖଚିତ ମୟୂର ସିଂହାସନକୁ ପର୍ସିଆକୁ ନେଇଯାଇଥିଲେ। ଖ୍ରୀ: ୧୭୪୭ ମସିହାରେ ଏହି ସିଂହାସନ ପାଇଁ ଅନ୍ୟ ଏକ ଯୁଦ୍ଧରେ ଏହାକୁ ନଷ୍ଟ କରିଦିଆଗଲା।

ମୟୂରର ବହୁ ଚନ୍ଦ୍ରିକାରେ ଶୋଭାପାଉଥିବା ତା'ର ପୁଚ୍ଛ ବା ପର ଆମକୁ ଆନନ୍ଦଦିଏ । ମୟୂରର ବହୁ ନାମ ଅଛି । ତା'ର କଣ୍ଠ ନୀଳବର୍ଣ୍ଣ ହୋଇଥିବାରୁ ତାହାର ନାମ 'ନୀଳକଣ୍ଠ' । ତାହାର ମୁଣ୍ଡରେ ଏକ ଚୂଳ ବା ଶିଖା ଶୋଭାପାଏ । ଏଣୁ ତାହାର ଅନ୍ୟ ନାମ ଶିଖୀ । ତା'ର ପୁଚ୍ଛର ଗୋଲେଇ ଏପରି ସଜେଇ ହୋଇ ରହେ ଯେ ତା'ର ନାମ 'କଲପୀ' । ମୟୂର ସାପ ଖାଏ । ତେଣୁ ତା'ର ନାମ 'ଭୁଜଙ୍ଗ ଭୁକ୍' । ଆକାଶର ମେଘ ଦେଖିଲେ ସେ ଖୁସିରେ ନାଚେ । ହିନ୍ଦୀ, ଉର୍ଦ୍ଦୁ, ଗୁଜରାଠୀ ଓ ମରାଠୀ ଭାଷାରେ ଏହାକୁ 'ମୋର' ବୋଲି କୁହନ୍ତି ।

ମୟୂର ମୁଣ୍ଡରେ କାହିଁକି ଚୂଳ ଅଛି, ସେ ବିଷୟରେ ଏକ ସୁନ୍ଦର ଲୋକକଥାଟିଏ ଦେଖିବାକୁ ମିଳେ । ଏକଦା ଗୋଟିଏ ବଣରେ ସିଂହ ଏକ ପଶୁ ଶିକାର କରି ତାକୁ ଖାଇବା ସମୟରେ ତା'ର ଦାନ୍ତ ମାଡ଼ିରେ ଏକ ବଡ଼ ଟୁକୁରା ହାଡ଼ ରହିଗଲା । ଯେତେ ଚେଷ୍ଟା କଲେ ବି ତାହା ବାହାରିପାରିଲା ନାହିଁ । ଏଣୁ ସେ ସବୁ ପକ୍ଷୀଙ୍କୁ ସେମାନଙ୍କର ଥଣ୍ଟଦ୍ୱାରା ସେହି ହାଡ଼ ଟୁକୁରାଟିକୁ ବାହାର କରିବା ପାଇଁ ଡକାଇଲା । କୌଣସି ପକ୍ଷୀ ଏଥିରେ ସଫଳ ହୋଇପାରି ନ ଥିଲେ; କିନ୍ତୁ ମୟୂର ସଫଳତାର ସହିତ ତାର ଥଣ୍ଟରେ ସିଂହର ଦାନ୍ତ ମୂଳରୁ ଟୁକୁରା ହାଡ଼ଟିକୁ ବାହାର କରିଦେଇଥିଲା । ଫଳରେ ସିଂହରାଜା ଖୁସିରେ ମୟୂର ମୁଣ୍ଡରେ ମୁକୁଟଟିଏ ପିନ୍ଧାଇ ମୟୂରକୁ ପକ୍ଷୀମାନଙ୍କର ରାଜା ବୋଲି ଘୋଷଣା କଲା । ଏହା ଏକ ଲୋକକଥା ହେଲେ ବି ସିଂହ ସହିତ ମୟୂରର ମିତ୍ରତା ଥିବାର ଦେଖାଯାଏ ।

ମୟୂର ଲାଞ୍ଜ ଲମ୍ବା ଓ ବଡ଼ ହୋଇଥିବାରୁ ତାକୁ ଲାଞ୍ଜା ମୟୂର ଓ ମୟୂରୀର ଲାଞ୍ଜ ସାନ ହୋଇଥିବାରୁ ତାକୁ ଲାଣ୍ଡୀ ମୟୂର କୁହନ୍ତି । ପ୍ରାଚୀନକାଳରୁ ମୟୂରର ଆଦର ଅଛି । ଆମ ଋକ୍‌ବେଦରେ ମୟୂର ବିଷୟରେ ଲେଖାଅଛି । ଦେବରାଜ ଇନ୍ଦ୍ରଙ୍କର ସଭାରେ ମୟୂର ଥିବାର ପ୍ରମାଣ ମିଳେ । ଶିବଙ୍କର ପରିବାରକୁ ଦେଖିଲେ, ଦେଖାଯାଏ ଯେ କାର୍ତ୍ତିକେୟଙ୍କର ବାହନ ହେଉଛି ମୟୂର । ଆମର ପ୍ରାଚୀନ ସିନ୍ଧୁ ସଭ୍ୟତାରେ ବ୍ୟବହାର କରାଯାଉଥିବା ମାଟି ପାତ୍ରରେ ମୟୂରର ଚିତ୍ର ସ୍ଥାନ ପାଇଛି । ତେଣୁ ବୈଦିକ ଯୁଗ ଓ ସିନ୍ଧୁ ସଭ୍ୟତାରେ ମୟୂର ସ୍ଥାନ ପାଇଛି । ବୁଦ୍ଧଦେବ ଏକ ଜନ୍ମରେ ମୟୂରର ଜନ୍ମ ପାଇଥିଲେ ।



ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ମୌର୍ଯ୍ୟବଂଶର ରାଜତ୍ୱ କାଳରେ ମୟୂର ଥିବା ଓ ମୌର୍ଯ୍ୟ ଶାସନ କାଳରେ ମୁଦ୍ରାରେ ମୟୂର ସ୍ଥାନ ପାଇଥିବାର ପ୍ରମାଣ ମିଳେ । ଗ୍ରୀକ୍ ବୀର ଆଲେକଜାଣ୍ଡରଙ୍କ ଭାରତ ଆକ୍ରମଣ ପରେ ଫେରିଯିବାବେଳେ ଭାରତରୁ ପ୍ରାୟ ୨୦୦ ମୟୂର ନେଇଯାଇଥିଲେ । ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ମସ୍ତକରେ ମୟୂର ଚନ୍ଦ୍ରିକା ଶୋଭାପାଏ । ରୋମ୍‌ରେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମୟୂର ଥିବାର ପ୍ରମାଣ ଗ୍ରୀକ୍ ଦାର୍ଶନିକ ଆରିଷ୍ଟୋଟଲ୍‌ଙ୍କ ବିବରଣୀରୁ ଜଣାଯାଏ । ଏଣୁ ବିଶ୍ୱରେ ପ୍ରାଚୀନ କାଳରୁ ମୟୂରର ସ୍ଥାନ ଚଳିଆସିଛି ।

ମୟୂର ଆକାଶରେ କଳାହାଣ୍ଡିଆ ମେଘ ଦେଖି ଆନନ୍ଦରେ ନାଚେ ଓ ତାର ରେତ ଝରି ମାଟିରେ ପଡ଼େ ।

ମୟୂରୀ ତାହା ପାନ କରି ଗର୍ଭଧାରଣ କରେ ଓ ଅଣ୍ଡା ଦିଏ । ମୟୂର ସାଧାରଣତଃ ବଡ଼ ବଡ଼ ବୁଦା ଓ ଜଙ୍ଗଲିଆ ଅଞ୍ଚଳରେ ରହିବାକୁ ଭଲପାଏ। ମୟୂରୀ ମାଟି ଉପରେ ଦୁଇରୁ ଛଅଟି ପର୍ଯ୍ୟନ୍ତ ଅଣ୍ଡା ଦେଇଥାଏ । ବେଳେବେଳେ ଦୁଇ ବା ତିନିକୋଣିଆ ଶାଖା ଡାଳରେ ବସାବାନ୍ଧି ମୟୂରୀ ଅଣ୍ଡା ଦିଏ ଓ ନିଜେ ଅଣ୍ଡାକୁ ଉଷୁମାଏ। ଅଣ୍ଡାରୁ ଛୁଆ ବାହାରିବାକୁ ପ୍ରାୟ ଏକ ମାସ ପର୍ଯ୍ୟନ୍ତ ଲାଗେ। ତେବେ ନଦୀ ବା ହ୍ରଦର କୂଳରେ ଏମାନେ ବସବାସ କରିବାକୁ ଭଲପାଆନ୍ତି।

ପାରାମାନଙ୍କ ପରି ମୟୂର ମଧ୍ୟ ମଣିଷମାନଙ୍କର ପୋଷା ମାନିଥା'ନ୍ତି। ତାକୁ ନିୟମିତ ଦୁଇତିନିବାର ଖାଇବାକୁ ଦେଲେ ମଣିଷର ପୋଷା ମାନିଥା'ନ୍ତି। ସାପ ମୟୂର ପାଖକୁ ଭୟରେ ଆସେନାହିଁ। କାରଣ ସାପ ମୟୂରର ପ୍ରିୟ ଖାଦ୍ୟ। ମୟୂରର ସାପ ଖାଦ୍ୟ ହେଲେ ବି ଗଛର କଅଁଳପତ୍ର ଓ କଡ଼ି ଖାଇବାକୁ ସେ ଭଲପାଏ।

ଭାରତର ଉତ୍ତର-ପଶ୍ଚିମ ସୀମା ଓ ଆସାମ ପରି ଉତ୍ତର-ପୂର୍ବ ରାଜ୍ୟଗୁଡ଼ିକରେ ମୟୂର ଖୁବ୍ କମ୍ ଦେଖାଯାଆନ୍ତି। ଚିତ୍ରକୂଟ, ବୃନ୍ଦାବନ ଓ ରାଜସ୍ଥାନ ଆଦି ଅଞ୍ଚଳରେ ଏମାନେ ଅଧିକ ଭାବରେ ଦେଖାଯାଆନ୍ତି।

ପୃଥିବୀର ସବୁ ଅଞ୍ଚଳରେ ମୟୂର ପ୍ରାୟ ଏକାପରି ନୁହଁନ୍ତି। ଆଫ୍ରିକା ଜଙ୍ଗଲରେ ଏକପ୍ରକାର ଧଳା ମୟୂର ଦେଖାଯାଆନ୍ତି। ଆମ ନନ୍ଦନକାନନରେ ଦୁଇ ଯୋଡ଼ି ଧଳା ମୟୂର ସ୍ଥାନ ପାଇଛନ୍ତି । ସେମାନଙ୍କର ନାମ 'ମାଣିକଯୋଡ଼ି' । ଭିଏତ୍ନାମରେ ଏକପ୍ରକାର କଳାବେକିଆ ମୟୂର ଦେଖାଯାଆନ୍ତି। ଏମାନଙ୍କର ବେକ ନୀଳ ପରିବର୍ତ୍ତେ କଳା ଦେଖାଯାଏ। ଏମାନଙ୍କୁ ଜାପାନୀ ମୟୂର କୁହାଯାଏ; କିନ୍ତୁ ଜାପାନରେ ଏହି କଳାବେକିଆ ମୟୂର ଦେଖାଯା'ନ୍ତି ନାହିଁ।



ମୟୂର ଭାରତର ଜାତୀୟ ପକ୍ଷୀ। ୧୯୬୨ ମସିହାରେ ଜାପାନ ରାଜଧାନୀ ଟୋକିଓରେ ପକ୍ଷୀ ସୁରକ୍ଷା ପରିଷଦର ଏକ ସଭା ହୋଇଥିଲା। ଏହି ସଭାରେ ବିଭିନ୍ନ ଦେଶକୁ ନିଜର ଜାତୀୟ ପକ୍ଷୀ ବାଛିବା ପାଇଁ କୁହାଯାଇଥିଲା। ତାର ମୁଖ୍ୟ କାରଣ ଥିଲା ପକ୍ଷୀ ସୁରକ୍ଷା। ଏଥିପାଇଁ ଆମ ଦେଶର ଗଠିତ ଏକ ବିଶେଷଜ୍ଞମଣ୍ଡଳୀ ମୟୂରକୁ ଭାରତର ଜାତୀୟ ପକ୍ଷୀ ରୂପେ ମନୋନୀତ କରିଥିଲେ। ଏଣୁ ଭାରତ ସରକାର ୧୯୬୩ ମସିହାରେ ମୟୂରକୁ 'ଜାତୀୟ ପକ୍ଷୀ' ରୂପେ ଘୋଷଣା କରିଛନ୍ତି।

*ଭାଟପଡ଼ା, ତିହିଡ଼ି, ଭଦ୍ରକ*

ଚାକିରି ପାଇଁ ସାକ୍ଷାତକାର ପରୀକ୍ଷା ଦେବାକୁ ଆସିଥିବା ଜଣେ ଛାତ୍ରକୁ ପରୀକ୍ଷକ ପଚାରିଲେ-- ଆମେ ପରିଷ୍କାର ପରିଚ୍ଛନ୍ନତାକୁ ଭଲପାଉ। ତୁମେ ତୁମର ପାଦଟିକୁ ଆସିଲାବେଳେ ପା'ପୋଛରେ ସଫା କରି ଆସିଛ କି ?

ପରୀକ୍ଷାର୍ଥୀ-- ହଁ, ଆଜ୍ଞା।

ପରୀକ୍ଷକ-- ଆମେ ସତକୁ ଭଲପାଉ। ସେଠାରେ ତ ପା'ପୋଛ ନାହିଁ !



# ଚାଲ ଅଣ୍ଟା ଭିଡ଼ି

ଶ୍ରୀ ଚିତ୍ତରଞ୍ଜନ ପଟ୍ଟନାୟକ

ଜଗନ୍ନାଥ, ବଳଭଦ୍ର, ଭାଇ ପରି ଭାଇ,
ସୁଭଦ୍ରା ଭଉଣୀ ପରି ଜଗତରେ କାହିଁ ?
ଯଶୋଦା ପରିକା ମାଆ କିଏ ଅଛି କୁହ,
ଶ୍ରବଣ କୁମାର ଥିଲା ପୁଅ ପରି ପୁଅ।
ଧ୍ରୁବ ପ୍ରହ୍ଲାଦ ପରି ଭକତ କେ ଗଣା,
ବିବେକାନନ୍ଦ ପରିକା କିଏ ଯୋଗଜନ୍ମା।
ଗୁରୁ ଆଜ୍ଞା ପାଳନରେ ଦୁଇ ଶିଷ୍ୟ ବଡ଼,
ଏକଲବ୍ୟ, ଆରୁଣିଙ୍କ ଇତିହାସ ପଢ଼।
ଏ ମାଟିର ପିତା ସିଏ ଆମେ ଡାକୁ ବାପୁ,
ବିବେକ ତରାଜୁ ଧରି ଗୁଣାବଳି ମାପୁ।
ଧର୍ମପଦ, ବାଜିଆଙ୍କୁ ପାରିବାନି କଳି,
ଦେଶ, ଜାତି, ହିତ ପାଇଁ ଦେଲେ ପ୍ରାଣ ବଳି।
ଏ ମାଟିର କୋଟି ଶିଶୁ ପଢ଼ି, ଶିଖି, ଜାଣ,
ସୁନ୍ଦର ଜୀବନ ଗଢ଼ ଅରଜିଣ ଜ୍ଞାନ।
ଆଜିର ଏ ଶିଶୁ ତୁମେ କାଲି ଯୁବ ପିଢ଼ି,
ସୁନାର ଭାରତ ଗଢ଼ 'ଚାଲ ଅଣ୍ଟା ଭିଡ଼ି'।

*'ନିଗମ ନିବାସ', ଘୁଟୁକେଶରୀ, ନରଣପୁର, କେନ୍ଦୁଝର*



# ବଟୁଆ

ଶ୍ରୀ ମାଧବାନନ୍ଦ ପଣ୍ଡା

ଜେଜେଙ୍କର ପ୍ରିୟ ପାନବଟୁଆଟି ଥାଏ ତହିଁ ଚାରି ଭାଗ
ଯହିଁ ଗଲେ ଜେଜେ ନ ଛାଡ଼ନ୍ତି ତାକୁ ସିଏ ଅବା ତାଙ୍କ ସାଙ୍ଗ।
ଗୋଟିଏ ଥାକରେ ପିତ୍ତଳ ଡିବାରେ ରହିଥାଏ ଗୋଟା ପାନ
ଦ୍ୱିତୀୟରେ ଚୂନ, ଗୁଆ, ଅଳେଇଚ, ଲବଙ୍ଗ, ଖଇରମାନ।
ତୃତୀୟ ଥାକରେ ଅମୃତ ଅଞ୍ଜନ, ଭିକ୍ସ୍ ଇନ୍‌ହେଲର୍
ହେଲେ ମୁଣ୍ଡବିନ୍ଧା ଅବା ନାକ ରୁନ୍ଧି ହେବେ ସେହୁ ବ୍ୟବହାର।
ଚତୁର୍ଥ ଥାକରେ ଥାଏ ଗୁଆକାତି କାଟିବାକୁ ଖଣ୍ଡଗୁଆ
ଦୁଇପଟ ଡୋର ଟାଣିଲେ ବଟୁଆ ମୁହଁଟି ହୁଏ ଗୋଜିଆ।
ବଟୁଆକୁ ଜେଜେ କାନ୍ଧରେ ଗଳେଇ ଯାଆନ୍ତି ଯୁଆଡ଼େ ମନ
ବନ୍ଧୁଙ୍କ ମେଳରେ ଗପ ଯୋଡ଼ିଦେଇ ପ୍ରସ୍ତୁତ କରନ୍ତି ପାନ।
ନିଜେ ଖଣ୍ଡେ ଖାଇ ଦିଅନ୍ତି ସଭିଙ୍କୁ, ଗପରେ ଯାଆନ୍ତି ମଜ୍ଜି
ତିଙ୍କିଶାଳଠାରୁ ଢେଙ୍କାନାଳ ଯାଏ, ହସରେ ଯାଆନ୍ତି ହଜି।
ପାଟି ଦି'କଳରୁ ବୋହିପଡୁଥାଏ ନାଲି ନାଲି ପାନ ବୋଳ
ପହଞ୍ଚିଗଲେ ମୁଁ ଅକସ୍ମାତେ ତହିଁ ଆଦରେ କରନ୍ତି କୋଳ।
କେଉଁକାଳୁ ଜେଜେ ଇହଲୀଳା ସାରି ଗଲେଣି ଅଫେରା ପଥେ
ସେ ସ୍ନେହସରାଗ ଅଦ୍ୟାପି ସାଇତି ରଖିଛି ହୃଦୟ ରଥେ।
ଛୋଟ ବାକ୍ସରେ ରହିଛି ଚଷମା, ବଟୁଆ ସାଇତା ହୋଇ
ସେସବୁ ଦେଖିଲେ ଆଖିର କୋଣରେ ଲୋତକ ଆସେ ଜକେଇ।

*୩୩, ନୟନ ବିହାର, କସୋଟୀ, ପାଣ୍ଡିରୀ,*
*କେନ୍ଦ୍ରାପଡ଼ା-୭୫୪୨୫୦*





ପିଲାମାନଙ୍କର ମାଟ୍ରିକ୍ ପରୀକ୍ଷା ଆସନ୍ନ। ଆଉ ଦୁଇଦିନ ପରେ ପରୀକ୍ଷା ଆରମ୍ଭ। ସମସ୍ତଙ୍କ ମୁହଁ ଶୁଖିଯାଇଛି। ଯେତେ ଭଲ କରି ପ୍ରସ୍ତୁତ ହୋଇଥିଲେ ବି ସଭିଙ୍କୁ ଡର। ପରୀକ୍ଷା ପୂର୍ବଦିନ ମନ୍ଦିର ଯାଇ, ମୁଣ୍ଡ ଓ ବେକରେ ସିନ୍ଦୂର ମାରି, ପରୀକ୍ଷା କୋଠରିକୁ ଆସିବେ। ଠାକୁରଙ୍କୁ ଡାକି ପ୍ରଶ୍ନ ଖାତା ଧରିବେ। ଏସବୁ ଆମେ ଅଙ୍ଗେ ଲିଭେଇଛୁ।

ମନେପଡ଼େ, ମ୍ୟାଟ୍ରିକ୍ ପରୀକ୍ଷାବେଳେ ଆମେ କେତେ ଡରୁଥିଲୁ। ଦହି ଖାଇ ଯାଉଥିଲୁ। ବୋଉ ଦାଣ୍ଡରେ କଳସ ବସାନ୍ତି। ପୂର୍ଣ୍ଣକୁମ୍ଭ ଦେଖିଗଲେ ଶୁଭ। ଆଗେ ଝିଅମାନଙ୍କ ପାଇଁ ବାପାମାଆଙ୍କର ଏତେ ଚିନ୍ତା ନ ଥିଲା। କିଏ ମ୍ୟାଟ୍ରିକ୍ ପାସ୍ କରୁ କରୁ ବାହାହେବ ତ କିଏ କଲେଜ ମାଡୁ ମାଡୁ ବାହାହେବ। ଝିଅମାନେ ସ୍ଥିର କରିଥା'ନ୍ତି ଯେ-- ଆମେ ବାହା ହେଇ ଶାଶୁଘରକୁ ଯିବୁ। ଖାଲି ମ୍ୟାଟ୍ରିକ୍ ପାସ୍ କରିଗଲେ ହେଲା -- ଏହାହିଁ ଥିଲା ସେତେବେଳର ଧରାବନ୍ଧା ସୂତ୍ର।

ଏବେ ଯୁଗ ବଦଳିଗଲାଣି। ବାପା, ମା' ଓ ପରିବେଶ ଝିଅମାନଙ୍କଠୁ ଅନେକ କିଛି ଆଶା କରୁଛନ୍ତି। ସେ ଆଶା ବି ପୂରଣ କରୁଛନ୍ତି ଝିଅମାନେ। ସେ ଯାହାହେଉ, ପୁଅ ହେଉ କି ଝିଅ ହେଉ, ପିଲାଙ୍କ ପାଇଁ ଶିକ୍ଷା ଅତିମାତ୍ରାରେ ଜରୁରୀ ହୋଇଯାଇଛି। ତେଣୁ ବାପାମାଆଙ୍କର ପିଲାଟି ପାଇଁ ଉଚ୍ଚାଭିଳାଷ ରହିବା ସ୍ୱାଭାବିକ। କାଲି ଟିଭି ଧାରାବାହିକରେ ଦେଖିଲି-- ପିଲାଟି ପରୀକ୍ଷା ଦେବାକୁ ଯାଉଛି, ବାପା ଆଣି ମଟର ସାଇକେଲରେ ଛାଡ଼ିଲାବେଳେ ତା' କାନେ କାନେ କହୁଛନ୍ତି-- ମୋହନ, ପରୀକ୍ଷାରେ ଭଲ କରିବୁ। ନ ହେଲେ ଦେଖିବୁ କ'ଣ କରିବି!

ପିଲାଟି ଡରିମରି ବାପାଙ୍କୁ ଚାହିଁ ଚାହିଁ ପରୀକ୍ଷା ଦେବାକୁ ଯାଉଛି। ଇଂରାଜୀ ପରୀକ୍ଷା ଦିନ ସେମିତି ବାପା କହିଲେ, "ଦେଖ୍ ମୋହନ, ଆଜି ଇଂରାଜୀ ଅଛି, ଯେମିତି ହେଉ ପୂରା ନମ୍ବର ରଖିବୁ। ଆଜିକାଲି ଇଂରାଜୀ ନ ହେଲେ ଜମାରୁ ବଡ଼ ଚାକିରି କରିପାରିବୁନି କି ଭଲ ପଇସା ବି ପାଇବୁନି। ଯା, ଆଜି ଯଦି ଖରାପ କରିବୁ, ତେବେ ଘରକୁ ଫେରିବୁନି।"

ବାସ୍, ତା'ପରେ ମୋହନର ଇଂରାଜୀ ପରୀକ୍ଷାରେ ଭଲ ହେଲାନି। ସେ ସେଇ ପରୀକ୍ଷା କୋଠରିରେ ଖାତା ଦେଇସାରି ବସିରହିଲା। ଦିଦି କହିଲେ-- ମୋହନ, ତୁ ଗଲାବେଳେ ପଙ୍ଖାଟା ବନ୍ଦ କରିଦେଇ ଯିବୁ। ସେ ପଙ୍ଖାକୁ ଚାହିଁଲା କିଛିକ୍ଷଣ। ତା'ପରେ ଅଣ୍ଟାରୁ ବେଲ୍ଟ ବାହାର କଲା, ବେକରେ ଗୁଡ଼େଇ ଚଉକି ଉପରେ ଠିଆହୋଇ ଝୁଲିପଡ଼ିଲା ପଙ୍ଖାରେ। ସାଙ୍ଗପିଲାମାନେ ଖୋଜି ଖୋଜି ଦେଖିଲାବେଳକୁ ଏ ଅବସ୍ଥା! ସାଙ୍ଗେ ସାଙ୍ଗେ ଡାକ୍ତରଖାନାକୁ ନେଲେ, ବଞ୍ଚିଗଲା। ତା'ର ସାଙ୍ଗମାନେ କହିଲେ-- ସେ ତା'ର ବାପାଙ୍କୁ ଭାରି ଡରେ। ଭଲ ପାଠ ପଢ଼ିବା ପାଇଁ ତା'ର ବାପା ତାକୁ ତାଗିଦ୍ କରନ୍ତି ସବୁବେଳେ। ତେଣୁ ସେ ସ୍କୁଲରେ ମୋଟେ ଖେଳେନି, ଶ୍ରେଣୀରେ ବସି ପଢ଼ୁଥାଏ। ଏମିତି ବି ହୁଏ, ଦିନେ ଦିନେ ସେ ଘରକୁ ନ ଯାଇ ଶ୍ରେଣୀରେ ବସି ପଢ଼ୁଥାଏ ସନ୍ଧ୍ୟା ପର୍ଯ୍ୟନ୍ତ।

ଶେଷରେ ଶିକ୍ଷକ, ସାଙ୍ଗମାନେ ଓ ଡାକ୍ତର ବାପାଙ୍କୁ ବହୁତ ବୁଝାଇଲେ। ତା'ର ବାପା ଭାବି ନ ଥିଲେ ଯେ ତାଙ୍କର ତାଗିଦ୍ ମୋହନ ଉପରେ ଏତେଟା ଚାପ

ପକାଇବ ଯେ, ଶେଷରେ ସେ ଜୀବନ ଦେବାକୁ ବି ଚେଷ୍ଟା କରିବ। ସେମିତି ଆଉ ଗୋଟିଏ ଘଟଣା ମୋ'ଝିଅ କହିଥିଲା । ମୋ' ଜୋଇଁର ସାଙ୍ଗର ପୁଅ ମ୍ୟାଟ୍ରିକ୍ ପରୀକ୍ଷା ପାଇଁ ପ୍ରସ୍ତୁତ ହେଲାବେଳେ ତା'ର ବାପା ସବୁବେଳେ ତାଗିଦ୍ କରେ-- ଯେମିତି ସେ ଆଇ.ଆଇ.ଟି.ରେ ଯୋଗଦେବ ବା ଆଇ.ଏ.ଏସ୍. ପାଇବ, ସେହିଭଳି ପାଠପଢ଼ୁ। ଶେଷରେ ପିଲାଟି କାଗଜରେ ତା'ର ମୃତ୍ୟୁର କାରଣ ଲେଖି ତା'ର ମା'ର ଓଢ଼ଣିକୁ ବେକରେ ଗୁଡ଼ାଇ ଆତ୍ମହତ୍ୟା କଲା ।

ଏସବୁ ଘଟଣା କ'ଣ ପାଇଁ ? ଆମେ ଅଭିଭାବକମାନେ ଭାବିବା ଆବଶ୍ୟକ । ଆମର ଉଚ୍ଚାଭିଳାଷକୁ ଆମ ପିଲା ଉପରେ ଥାପିବା କ'ଣ ଉଚିତ ? ଏହାଦ୍ୱାରା ସେ ପାଠକୁ ଡରିବ। ମୋ ଘରେ ଯେଉଁ ସ୍ତ୍ରୀ ଲୋକଟି କାମରେ ସାହାଯ୍ୟ କରେ, ତା'ର ୮ ବର୍ଷର ଝିଅକୁ ସେ ଟ୍ୟୁସନ୍ ଦେଉଛି। ସେ ସ୍କୁଲ ପରୀକ୍ଷାରେ ୫୦ରୁ ୪୦ ରଖିଲା । ତା'ର ମା' ତାକୁ ମାରି ମାରି ନୟାନ୍ତ କରିଦେଇ ମତେ ଆସି କାନ୍ଦୁଣୁମାନ୍ଦୁଣୁ ହେଇ କହିଲା। ମୁଁ ଆଶ୍ଚର୍ଯ୍ୟ ! ତା'ର ମା' ପାଠ ଅଳ୍ପ ପଢ଼ିଛି। ଅଳ୍ପ ବିଦ୍ୟା ଭୟଙ୍କରୀ। ତେଣୁ ନମ୍ବର ବିଷୟରେ ତା'ର ଧାରଣା ନାହିଁ। ମୁଁ ତାକୁ କହିଲି-- ସେ ଏତେ ଭଲ କରିଛି, ତୁ ତାକୁ ମାରିଲୁ ?

ଏମିତି ସବୁ ଘଟଣା। ଆମେ ଯଦି ମୂର୍ଖ, ଆମେ ଚାହୁଁ ଆମ ପିଲାଟି ଭଲ ପଢ଼ି ଆମଠାରୁ ପାଠୁଆ ଓ ବଡ଼ମଣିଷ ହେଉ; ହେଲେ ତା'ର ବ୍ୟକ୍ତିଗତ ଇଚ୍ଛା ତ ପୁଣି ଅଛି! ତା'ର ଇଚ୍ଛାକୁ ଆମ ଉଚ୍ଚାଭିଳାଷ ଦ୍ୱାରା ଚାପିଦେଲେ, ତା'ର ଜୀବନ କେମିତି ଆଗକୁ ଯିବ ? ଅଭିଭାବକମାନେ ଭାବନ୍ତି -- ଆମେ ଆମ ପିଲାକୁ ଯାହା ଇଚ୍ଛା ତାହା କହିପାରିବୁ। ଯାହା ଇଚ୍ଛା ତାହା କରିପାରିବୁ-- ସେଥିରେ ସେ ଆପତ୍ତି କଲେ ଅମଣିଷ ହେବ। ବାପା, ମା' ନିଜକୁ ଖୁବ୍ ବିଜ୍ଞ ବୋଲି ଭାବନ୍ତି, ବିଶେଷକରି ତାଙ୍କ ପିଲାଙ୍କ ପାଖରେ। ସେଥିପାଇଁ ଏଠିକାର ପିଲାଙ୍କୁ ଲକ୍ଷ୍ୟ କଲେ ଆମେ ଜାଣିପାରିବା-- ପ୍ରାୟ ଅଧିକାଂଶ ଭୟାଳୁ, ପରାଧୀନ, ଲଜ୍ଜାଶୀଳ ଜଣାପଡ଼ନ୍ତି, ଅନ୍ତତଃ ମୁଁ ଯାହା ଲକ୍ଷ୍ୟ କରିଛି।

ତାଙ୍କର କାନ୍ଦିବାର, ରାଗିବାର, ହସିବାର, ଖେଳିବାର, ଖେଳନା ଭାଙ୍ଗିବାର, ଖେଳନା ଗଢ଼ିବାର, ଦୁନିଆକୁ ତା'ର ନିଜ ଆଖିରେ, ତା'ର ଇଚ୍ଛାନୁସାରେ ଦେଖିବାର ଅଧିକାର ରହିଛି। ତାକୁ ଆମେ ଛଡ଼ାଇନେଲେ ସେ ଏକ ଭିନ୍ନ ମଣିଷ ହୋଇ ବାହାରିବ ବୋଲି ମୁଁ ଭାବେ। ତେଣୁ ଆମେମାନେ ଆମ ପିଲାଙ୍କୁ ଶୃଙ୍ଖଳିତ କରିବା, ଭଲ ଅଭ୍ୟାସ ଶିଖାଇବା ଏବଂ ତା'ର ଚାଲିଚଳନକୁ ଲକ୍ଷ୍ୟ କରିବା; ମାତ୍ର ତା' କାନ୍ଧରେ ଆମର ଇଚ୍ଛାର ଜୁଆଳି ପକାଇବାନି ।

ସେ ପରୀକ୍ଷାକୁ ଯିବା ସମୟରେ ତାକୁ ସେଭଳି କିଛି କହିବା ନାହିଁ, ଯାହା ତାକୁ ବିଷାଦଗ୍ରସ୍ତ କରିବ। ସେ ପରୀକ୍ଷାରୁ ଫେରିଲା ପରେ ତାକୁ ହଠାତ୍ ପଚାରିବା ନାହିଁ-- ତୁ ପରୀକ୍ଷାରେ କେମିତି କଲୁ ? ଏତେ ପ୍ରଶ୍ନ କାହିଁକି ଛାଡ଼ିଲୁ ? ଏତିକି କରିପାରିଲୁ ନାହିଁ ! କାଲି କ'ଣ ଭଲକରି ପଢ଼ି ନ ଥିଲୁ ?

ପିଲାଙ୍କର କୋମଳ ମସ୍ତିଷ୍କକୁ ତ ଆଜିକାଲି ଆମେ ଦେଖୁଛେ। ପାଠବୋଝ, ବହିବୋଝ, ପାଠର କ୍ଳିଷ୍ଟତା-- ଏ ସବୁକିଛିରେ ସେମାନେ ସହଜେ ଭାରାକ୍ରାନ୍ତ। ତେଣୁ ପରୀକ୍ଷା ପରେ ସେମାନେ ଘରକୁ ଆସି ଯଦି ପିତାମାତାଙ୍କ ଠାରୁ କୋମଳ ବ୍ୟବହାର ନ ପାଇବେ, ତା'ହେଲେ ତାଙ୍କର ଅବସ୍ଥା କ'ଣ ହେବ ? ଶିକ୍ଷକ ଓ ଅଭିଭାବକଙ୍କର ଦାୟିତ୍ୱ ପିଲାଙ୍କ ଭବିଷ୍ୟତକୁ ଗଢ଼ିବାର ଭବିଷ୍ୟତକୁ ତଡ଼ିବାର ନୁହେଁ।

**--ଅନସୂୟା ନନ୍ଦ**



# ଲଢ଼େଇକୁ ଅଧିକ ବେଗରେ ନେବି

ଶ୍ରୀ କାର୍ତ୍ତିକ ଚନ୍ଦ୍ର ଷଡ଼ଙ୍ଗୀ

କି ସାହସ ! କି ତ୍ୟାଗ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ଅଣ୍ଟା ଭିଡ଼ିଥିବା ଯୁବକଟିର ! ସଂଗ୍ରାମକୁ ଅଧିକ ଗତିଶୀଳ କରିବା ଥିଲା ତାର ଲକ୍ଷ୍ୟ। ଚାରିଆଡ଼େ ଇଂରେଜ ଫୌଜର ଶକୁନ ଦୃଷ୍ଟି। କୁଆଡ଼େ ଉଭାନ୍ ହେବ ଚିନ୍ତା କରି ବୃଶ୍ଚିକ ଦଂଶନ ସେ ପାଉଥାଏ। ଶତ୍ରୁ ଉପରେ ନିଘା ରଖିଥିବା ଇଂରେଜ ସରକାରର ପଞ୍ଝାରୁ ଖସିଯିବା କାଠିକର ପାଠ ହୋଇ ପଡ଼ିଲା। ଶେଷରେ ଧରାପଡ଼ି ପାଣି ଜାହାଜରେ ବୁହା ହୋଇ ସମୁଦ୍ର ବକ୍ଷରେ ଯାତ୍ରା କରୁଥାଏ। ପୋଲିସର କଡ଼ା ନଜରକୁ ଏଡ଼ାଇ ସୁଯୋଗ ଉଣ୍ଡି ଜାହାଜରୁ ଲମ୍ଫପ୍ରଦାନ କଲା। ରାତ୍ରୀର ଘନ ଅନ୍ଧକାର ଭିତରେ ବିସ୍ତୀର୍ଣ୍ଣ ସାଗର ବକ୍ଷରେ ସନ୍ତରଣ କରୁଛି ଯୁବସଂଗ୍ରାମୀଟି। ଭୀମମୂର୍ତ୍ତି ପ୍ରଦର୍ଶନ ପରିବର୍ତ୍ତେ ସାଗର ଆଶ୍ଳେଷ କରିଛି ଯୁବସଂଗ୍ରାମୀଟିକୁ। ଫେନିଳ ସମୁଦ୍ରର ଭୀମଗର୍ଜନ ଯୁବକଟିର କାନରେ କହିବା ଭଳି ପ୍ରତ୍ୟୟ ହେଉଛି, "ଦୀନତା, ଜଡ଼ତା ଭୁଲି ଉଭାହୁଅ ଯଜ୍ଞବେଦୀ ପରେ। ଭୀରୁତାକୁ ପଦେ ଦଳ ବୀର ସମ ଆସ ।"

ମାଇଲ ମାଇଲ ଧରି ସନ୍ତରଣ କରୁଥାଏ ଯୁବକଟି ସମୁଦ୍ର ବକ୍ଷରେ। କି ଦୁଃସାହସିକତା ! ଦେଶମାତୃକା ପାଇଁ ଜୀବନକୁ ପାଣି ଛଡ଼େଇ ଦେଇଥିବା ଯୁବକଟିର କି କଲବଲ ଅବସ୍ଥା ! ଏହି ସମୟରେ ପାଣି ଜାହାଜ ଭିତରୁ ଇଂରେଜ ସୈନ୍ୟଙ୍କର ଭୀଷଣ ଗୁଳିବର୍ଷଣ ସତ୍ତ୍ୱେ ଯୁବକଟିର ମନୋବଳ ଭାଂଗି ପଡ଼ି ନ ଥିଲା । ବିଶାଳ ସାଗର, ଭୟଙ୍କର ସାମୁଦ୍ରିକ ଜୀବ, ଉତ୍ତୁଙ୍ଗ ଊର୍ମିମାଳା ସବୁକୁ ବେଖାତିର କରି ପ୍ରତିକୂଳ ପରିସ୍ଥିତିରେ ଗତିଶୀଳ ହେବା ସଂଗ୍ରାମୀର ଲକ୍ଷଣ।

ସମସ୍ତ ଦୁଃସାହସିକତା, ସଂଘର୍ଷ ସତ୍ତ୍ୱେ ଯୁବକଟି ଧରା ପଡ଼ିଯାଏ ବ୍ରିଟିଶ ଶକ୍ତି ହାତରେ। ଶତ୍ରୁ ପକ୍ଷର କ୍ରୋଧ ଦ୍ୱିଗୁଣ ପ୍ରତିହଂସାର ବହ୍ନିଶିଖା ମେଲାଇ ଭୟଙ୍କର ସାଜିଛି। ଦେଶମନସ୍କ ଯୁବକଟିର ମନୋଭାବକୁ ପଙ୍ଗୁ କରିଦେବାର ହୀନ ପ୍ରୟାସ କଲା ବ୍ରିଟିଶରାଜ। କଳାପାଣି ଦଣ୍ଡରେ ଦଣ୍ଡିତ ହୋଇ ସେଲ୍ୟୁଲାର ଜେଲରେ କ୍ଷୁଦ୍ର ଏକ ରୁଦ୍ଧ ପ୍ରକୋଷ୍ଠରେ କଡ଼ା ନଜରରେ ରଖାଗଲା, ପୁଣି ଯେପରି ଅଦମନୀୟ ଯୁବକଟି ଖସି ନ ପଳାଏ । ବନ୍ଦୀ କରାଯାଇ ଅକଥନୀୟ ଅତ୍ୟାଚାର, ଅମାନୁଷିକ ଯନ୍ତ୍ରଣା ଦିଅନ୍ତି ଭାରତର ସେହି ସିଂହ ଶାବକକୁ।

"ଲଢ଼େଇକୁ ଅଧିକ ବେଗରେ ନେବି" ଯାହାର ଅନ୍ତଃସ୍ୱର ଥିଲା, ସେ ଲଟକିଗଲା ବ୍ରିଟିଶରାଜର ଯୂପକାଷ୍ଠରେ। ସେ ସଂଗ୍ରାମୀଜଣଙ୍କ ହେଉଛନ୍ତି ଅମର ବୀର ସଂଗ୍ରାମୀ 'ବିନାୟକ ଦାମୋଦର ସାବରକର'।

*ଆସିଷ୍ଟାଣ୍ଟ ପୋଷ୍ଟମାଷ୍ଟର, ଜି.ପି.ଓ, କଟକ- ୭୫୩୦୦୧*

## ହର ଅମର ରହେ

ପିତାମାତାଙ୍କ ସହ ସେ ଯାଇଥିଲେ ନାଟକ ଦେଖିବାକୁ; ହେଲେ ସେତେବେଳେ ତାଙ୍କର ନାଟକ ଦେଖିବାର ବୟସ ହୋଇ ନ ଥିଲା ; ମାତ୍ର ୬ ମାସର ହୋଇଥିଲେ ସେ । ବାପା ବିପିନ ବିହାରୀ ପଟ୍ଟନାୟକ ଥିଲେ ସେତେବେଳେ ପୋଲିସ ଅଫିସର । ମାତା ଅନ୍ନଦା ପଟ୍ଟନାୟକଙ୍କ କୋଳରେ ବସିଥିଲେ ସେ ଦର୍ଶକ ମଞ୍ଚରେ ।

ଅଭିନୟରେ ଦରକାର ପଡ଼ିଲା , ଏକ ନବଜାତକ ଶିଶୁର । ହଠାତ୍ ବିପିନ୍‌ବାବୁ ମା'ଙ୍କ କୋଳରୁ ତାଙ୍କୁ ନେଇ ମଞ୍ଚରେ ଦେଇଥିଲେ । ସେଇ ଥିଲା ତାଙ୍କର ପ୍ରଥମ ମଞ୍ଚ ଅଭିନୟ । ଅଧିକାଂଶ ଓଡ଼ିଆ ଚଳଚ୍ଚିତ୍ର କଳାକାରଙ୍କର ମଞ୍ଚରୁ ହିଁ ଅଭିନୟ ଆରମ୍ଭ । ସେହିଭଳି ଚଳଚ୍ଚିତ୍ର ନିର୍ମାତା , ନର୍ଦ୍ଦେଶକ , ଅଭିନେତା ହର ପଟ୍ଟନାୟକ ପ୍ରଥମେ ମଞ୍ଚରେ ଅଭିନୟ କରିଥିଲେ । ସ୍କୁଲରେ ପଢ଼ିଲା ସମୟରେ ମଧ୍ୟ ସେ ଅଭିନୟ କରିଥିଲେ ।

୧୯୧୪ ମସିହାରୁ ଚଳଚ୍ଚିତ୍ର ପର୍ଦ୍ଦାରେ ସେ ଦଳୀୟ ନୃତ୍ୟାଭିନୟରେ ଅଂଶଗ୍ରହଣ କରିଥିଲେ 'ଜୀବନ ସଂଗ୍ରାମ' ଚଳଚ୍ଚିତ୍ରରୁ । ଏଥିରେ ସେ ଥିଲେ ସହକାରୀ ନିର୍ଦ୍ଦେଶକ ଥିଲେ । 'ଜୋର୍ ଯାହାର ମୂଲକ ତା'ର' ରେ ସେ ସହକାରୀ ନିର୍ଦ୍ଦେଶକ ମଧ୍ୟ ଥିଲେ । ଓଡ଼ିଆ ଚଳଚ୍ଚିତ୍ରରେ ସେ ଖଳନାୟକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ସେଥିରେ ସେ ମଧ୍ୟ ସଫଳ ହେଲେ ।

୧୯୯୦ରେ ସେ 'ଦଇବ ଦଉଡ଼ି' ଚଳଚ୍ଚିତ୍ରରେ ନିର୍ଦ୍ଦେଶନା ଦେଇଥିଲେ । ତାଙ୍କର ନିର୍ଦ୍ଦେଶିତ ପ୍ରାୟ ସମସ୍ତ ଚଳଚ୍ଚିତ୍ର ହିଟ୍ ହୋଇଥିଲା । ଅନେକବର୍ଷ ଧରି ସେ ଖଳନାୟକ ଓ ନିର୍ଦ୍ଦେଶନାରେ ରହିଥିଲେ । ଟିଭି ଧାରାବାହିକ 'ଜେଜେମା' ଓ ଆହୁତିର ସେ ଥିଲେ ମୁଖ୍ୟ । ଜେଜେମା' ଧାରାବାହିକ କୌଣସି କାରଣରୁ ଅଧାରୁ ବନ୍ଦ ହୋଇଗଲା । ଆହୁତି ତାଙ୍କର ଶେଷ ଅଭିନୟ ଥିଲା ।

ଅସୁସ୍ଥତା ଭିତରେ ଥାଇ ସେ ଶେଷପର୍ଯ୍ୟନ୍ତ ଅଭିନୟ ଜଗତରେ ବିଦ୍ୟମାନ ଥିଲେ । ଆଶ୍ଚର୍ଯ୍ୟର କଥା , ଆହୁତି ଚଳଚ୍ଚିତ୍ରରେ ମଧ୍ୟ ତାଙ୍କର ଚରିତ୍ରର ମୃତ୍ୟୁ ହେବାର ଦେଖାଯାଇଥିଲା । ୨୦୧୪ ପର୍ଯ୍ୟନ୍ତ ସେ କାର୍ଯ୍ୟକ୍ଷମ ଥିଲେ । ସେ କହନ୍ତି-- ପତ୍ନୀ ଓ ପରିବାର



ମୋର ପ୍ରଥମ। ମୋର ଦୁଇ ଝିଅ ଯେତେବେଳେ ବାହାରକୁ ପଢ଼ିବାକୁ ଗଲେ, ସେତେବେଳେ ଆମ ଜୀବନ ଦୁଃସହ ହୋଇଗଲା। ମୁଁ ନଗ୍ନତାକୁ ସମ୍ପୂର୍ଣ୍ଣ ବିରୋଧ କରେ। ଖରାପ ନ ଦେଖାଇଲେ, ଲୋକେ ଭଲ କ'ଣ ଜାଣିପାରିବେନି। ତେଣୁ ପ୍ରଶଂସା ଠାରୁ ମୁଁ ବେଶି ଗାଳି ଖାଇଛି।

ଡ୍ରାମା କଲେଜରେ ଅଭିନେତା ଅଜିତ୍ ଦାଶଙ୍କର ସେ ଥିଲେ ଛାତ୍ର। ସେ କହନ୍ତି-- ଅଭିନୟରେ ଜଟିଳତାକୁ ସେ ଖୁବ୍ ଶୀଘ୍ର ଧରି ନେଉଥିଲେ। ସେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ ଖଳନାୟକ। ତାଙ୍କର ଶେଷ ଇଚ୍ଛା ଥିଲା ହିନ୍ଦୀ ଚଳଚ୍ଚିତ୍ରରେ ଅଭିନୟ କରିବେ; ମାତ୍ର ତାହା ପୂରଣ ହୋଇପାରିଲାନି। ଥରେ ସୁଯୋଗ ମିଳିଥିଲା; ହେଲେ ଦୁର୍ଭାଗ୍ୟକୁ ତାଙ୍କର ଅସୁସ୍ଥତା କାରଣରୁ ସେ ଅଭିନୟ କରିପାରିଲେ ନାହିଁ। କେତେକ ବଙ୍ଗଳା ଚଳଚ୍ଚିତ୍ରରେ ସିଏ ଅଭିନୟ କରିଛନ୍ତି ଓ ନିର୍ଦ୍ଦେଶନା ମଧ୍ୟ ଦେଇଛନ୍ତି। ତାଙ୍କର ସଫଳ ଯାତ୍ରାନାଟକ ଥିଲା-- ବାଦୁଡ଼ି ମାଡିଛି, କାରଗିଲରୁ ଚିଠି ଆସିଛି, କାନ ମୋଡ଼ିଦେଲେ ସତ କହିବି, ମୁଁ ଇଂଲିଶ ମିଡିୟମ୍ ଝିଅ ଇତ୍ୟାଦି। ଅଭିନେତା ବାବୁଶାନ୍ ଓ ଅନୁଭବଙ୍କୁ ସେ ଚଳଚ୍ଚିତ୍ରରେ ପ୍ରଥମ ସୁଯୋଗ ଦେଇଥିଲେ।

ତାଙ୍କର ଅସୁସ୍ଥତା ଆରମ୍ଭ ହେଲା ୨୦୦୮ ମସିହାରୁ। ପ୍ରାୟ ୮ ବର୍ଷ କାଳ ସେ କର୍କଟ ବ୍ୟାଧିରେ ଆକ୍ରାନ୍ତ ହୋଇ ଚିକିତ୍ସିତ ହେଉଥିଲେ। ସେ ସୁସ୍ଥ ହୋଇ ଫେରିବା ପରେ ୨୦୧୪ ପର୍ଯ୍ୟନ୍ତ ଅଭିନୟ ଓ ନିର୍ଦ୍ଦେଶନା ଦେଇଥିଲେ।

ତାଙ୍କର କେତେଗୁଡ଼ିଏ ନିଜସ୍ୱ ସଂଳାପ ଲୋକପ୍ରିୟ ଥିଲା। ଯଥା-- ମା'ରାଣ, ନାଇଁ ନାଇଁ ମ, ଆମ ଓଡ଼ିଶାରେ ଏମିତି ହୁଏନି, ଫୁଲ୍ ବୋବାଲ୍, ଗଙ୍ଗାକୂଳ ଆସି ପାପ ନ ଧୋଇ ଚାଲିଯିବୁ ଇତ୍ୟାଦି।



ତାଙ୍କ ଅଭିନୀତ 'ଅଣ୍ଟି ଛୁରୀ ତଣ୍ଟି କାଟେ'ର ଏକ ଦୃଶ୍ୟ

ତାଙ୍କର ଅଭିନୀତ ଓ ନିର୍ଦ୍ଦେଶିତ ଚଳଚ୍ଚିତ୍ରଗୁଡ଼ିକ ହେଲା-- ଜୀବନ ସଂଗ୍ରାମ, ସହରୀବାଘ, ସୁନା ଚଢ଼େଇ, ଦଇବ ଦଉଡ଼ି, (ଅଭିନୟ ଓ ନିର୍ଦ୍ଦେଶନା), ଭାଗ୍ୟ ହାତେ ଡୋରି (ନିର୍ଦ୍ଦେଶନା), ପୁଅ ମୋର ଭୋଳା ଶଙ୍କର (ଅଭିନୟ ଓ ନିର୍ଦ୍ଦେଶନା), ସ୍ତ୍ରୀ, ସହର ଜଳୁଛି, ପାଗଳପ୍ରେମୀ, (ଅଭିନୟ ଓ ନିର୍ଦ୍ଦେଶନା), ଥ୍ୟାଙ୍କ୍ ୟୁ ଭଗବାନ୍, କୁରୁକ୍ଷେତ୍ର, ତୋ ଆଖିରେ ମୁଁ ଇତ୍ୟାଦି।

ଅଭିନୟରେ ପର୍ଦ୍ଦା ପଡ଼େ। ଶେଷହୁଏ ଯାତ୍ରା, ନାଟକ, ଚଳଚ୍ଚିତ୍ର। ତାଙ୍କର ଜୀବନର ଯବନିକା ପାତ ହେଲା ଜାନୁଆରୀ ୧୩ ତାରିଖରେ। ଜନ୍ମ ହୋଇଥିଲେ ୧୯୫୮, ଅକ୍ଟୋବର ୧୨ ତାରିଖ ଓଲ୍ଡ ଟାଉନ୍, ଭୁବନେଶ୍ୱରରେ। ଖୁମ୍ କମ୍ ବୟସ-- ୫୫ ବର୍ଷରେ ତାଙ୍କ ବିୟୋଗ, ସାରା ଓଡ଼ିଶାବାସୀଙ୍କୁ ସ୍ତବ୍ଧ କରିଦେଇଥିଲା। 'ହର ଅମର ରହେ' ଧ୍ୱନିରେ ସାରା କଟକ ସହରର ପ୍ରତିଧ୍ୱନିତ ହୋଇଥିଲା।

ସେ ଥିଲେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ବିରଳ ପ୍ରତିଭା। ସେ ସ୍ଥାନ କେହି ପୂରଣ କରିପାରିବେ ନାହିଁ ।



# 'ଦିଲ୍‌ୱାଲେ ଦୁଲ୍‌ହନିଆ' ଚଳଚ୍ଚିତ୍ରର କେତେକ ଦୃଶ୍ୟ




'ଦିଲ୍‌ୱାଲେ ଦୁଲ୍‌ହନିଆ' ହିନ୍ଦୀ ଚଳଚ୍ଚିତ୍ରର ଐତିହାସିକ ଯାତ୍ରା ୧୯ ତାରିଖ ଦିନ ଶେଷ ହୋଇଛି ମୁମ୍ବାଇର 'ମରାଠା ମନ୍ଦିର'ର ପ୍ରେକ୍ଷାଳୟରେ। ନିରବଚ୍ଛିନ୍ନ ଭାବେ ୧୦୦୯ ସପ୍ତାହ ଧରି ପ୍ରଦର୍ଶିତ ହୋଇ ରେକର୍ଡ ସୃଷ୍ଟି କରିଛି ଏହି ଚଳଚ୍ଚିତ୍ର। ଶେଷ ଶୋ'ରେ ୨୧୦ ଜଣ ଦର୍ଶକ ଥିଲେ। 'ଶୋଲେ' ଓ 'ମୁଗଲ-ଏ-ଆଜମ'କୁ ପଛରେ ପକାଇ ଏହି ଚଳଚ୍ଚିତ୍ରରେ ଶେଷ ଯବନିକା ପଡ଼ିଛି।





# ଶିଶୁ ସାହିତ୍ୟିକ ରାମକୃଷ୍ଣ ନନ୍ଦଙ୍କ ଜୟନ୍ତୀ

'ଭାବପ୍ରବଣତା ଓ ସୃଜନଶୀଳତା ନ ରହିଲେ ଜୀବନ ଦୁର୍ବିସହ ହୋଇଯିବ । ଏଣୁ ବଞ୍ଚିବାକୁ ହେଲେ ସ୍ୱପ୍ନବିଳାସୀ ହେବାକୁ ପଡ଼ିବ' ବୋଲି ରବିବାର ଅପରାହ୍ଣରେ ଓଲଟପୁର ଥାନା ଅନ୍ତର୍ଗତ ବାଇରୋଇ ଠାରେ ଶିଶୁ ସାହିତ୍ୟିକ ରାମକୃଷ୍ଣ ନନ୍ଦ ସ୍ମୃତି ପରିଷଦ ଆନୁକୂଲ୍ୟରେ ଆୟୋଜିତ ୧୦୯ତମ ଜୟନ୍ତୀ ପାଳନ ଅବସରରେ ବିଶିଷ୍ଟ ବକ୍ତାମାନେ ମତପ୍ରକାଶ କରିଛନ୍ତି ।

ଉତ୍ସବରେ ମୁଖ୍ୟ ଅତିଥି ଭାବେ ସମବାୟ ଓ ଅବକାରୀ ମନ୍ତ୍ରୀ ଡାଃ ଦାମୋଦର ରାଉତ, ମୁଖ୍ୟବକ୍ତା ଭାବେ ଓଡ଼ିଶା ସାହିତ୍ୟ ଏକାଡେମୀର ପୂର୍ବତନ ସଚିବ ବିଜୟ କୁମାର ନାୟକ, ସମ୍ମାନିତ ଅତିଥି ଭାବେ ନିଆଳି ବିଧାୟକ ଡାଃ ପ୍ରମୋଦ କୁମାର ମଲ୍ଲିକ ପ୍ରମୁଖ ଯୋଗଦେଇଥିଲେ । ବିଶିଷ୍ଟ ସ୍ତମ୍ଭକାର ତଥା 'ସୁବାର୍ତ୍ତା'ର ସମ୍ପାଦକ ପ୍ରଦ୍ୟୁମ୍ନ ଶତପଥୀ ସଭାପତିତ୍ୱ କରିଥିଲେ । କାର୍ଯ୍ୟକ୍ରମ ସଂଯୋଜନା ପ୍ରମୋଦ ନାୟକଙ୍କ ଦ୍ୱାରା ହୋଇଥିଲା । ଅତିଥିମାନେ ରାମକୃଷ୍ଣ ନନ୍ଦ ଓ ପତ୍ନୀ ସୌଦାମିନୀ ନନ୍ଦଙ୍କ ତୈଳଚିତ୍ରରେ ପୁଷ୍ପମାଲ୍ୟ ଅର୍ପଣ କରିଥିଲେ । ମନ୍ତ୍ରୀ ଶ୍ରୀ ରାଉତ ଜଗନ୍ନାଥ ସଂସ୍କୃତି, କେନ୍ଦୁବିଲ୍ୱସ୍ଥିତ ଗୀତଗୋବିନ୍ଦର ରଚୟିତା ଜୟଦେବ ଓ ପ୍ରାଚୀ ଉପତ୍ୟକା ସମ୍ପର୍କରେ ଆଲୋକପାତ କରିଥିଲେ । ଶିକ୍ଷକ ରମାକାନ୍ତ ସ୍ୱାଇଁ, ସହକାରୀ ଶିକ୍ଷାଧିକାରୀ ସରୋଜିନୀ ସାହୁ ଓ ଶିକ୍ଷକ ସୂର୍ଯ୍ୟକାନ୍ତ ସାହୁଙ୍କୁ 'ରାମକୃଷ୍ଣ ନନ୍ଦ ସ୍ମୃତି ସମ୍ମାନ' ରେ ସମ୍ମାନିତ କରାଯାଇଥିଲା । ଛାତ୍ରଛାତ୍ରୀଙ୍କ ଦ୍ୱାରା କବିଙ୍କ ରଚିତ 'ଆହେ ଦୟାମୟ ବିଶ୍ୱବିହାରୀ' ପରିବେଷିତ ହୋଇଥିଲା । ସୂର୍ଯ୍ୟକାନ୍ତ ପଣ୍ଡା ଧନ୍ୟବାଦ ଅର୍ପଣ କରିଥିଲେ । ଛାତ୍ରଛାତ୍ରୀଙ୍କ ଦ୍ୱାରା ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷିତ ହୋଇଥିଲା । ଏ ସମସ୍ତ ଆୟୋଜନ ଶ୍ରୀ ପ୍ରକାଶ ନନ୍ଦଙ୍କ ପ୍ରତ୍ୟକ୍ଷ ପରିଚାଳନାରେ ସୂଚାରୁ ରୂପେ ସମ୍ପାଦିତ ହୋଇଥିଲା ।



ଧ୍ରୁବତାରା ପକ୍ଷରୁ ଶିଶୁ ସାହିତ୍ୟିକ ରାମକୃଷ୍ଣ ନନ୍ଦଙ୍କର ଜୟନ୍ତୀ ଦିବସ ସ୍ୱର୍ଗତ ନନ୍ଦଙ୍କ କର୍ମକ୍ଷେତ୍ର 'ସଂସାର' ପତ୍ରିକା କାର୍ଯ୍ୟାଳୟ ପରିସର ମଧ୍ୟରେ ଅନୁଷ୍ଠିତ ହୋଇଯାଇଛି । ବିଷ୍ଣୁ ଚରଣ ଜେନାଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ସଭାରେ ପତିତପାବନ ମହାପାତ୍ର, ଲକ୍ଷ୍ମୀଦେବୀ, ମୁରଲୀଧର ପାଇଟାଲ, ଅମିତା ବେହେରା, ଫକୀର ମଲ୍ଲିକ, ପ୍ରସନ୍ନ କୁମାର ଦାଶ, ଭୁବନାନନ୍ଦ ମହାନ୍ତି, ନଦୀୟା ବିହାରୀ ମହାନ୍ତି ପ୍ରମୁଖ ଯୋଗଦେଇ ବକ୍ତବ୍ୟ ପ୍ରଦାନ କରିଥିଲେ । 'ସଂସାର' ପତ୍ରିକାର ସଂପାଦିକା ଓ ପ୍ରକାଶକ ସମସ୍ତଙ୍କୁ ସ୍ୱାଗତ ଜଣାଇଥିଲେ ।



## ପୁସ୍ତକ ପରିଚୟ

**ଗଡ଼ିବା ସୁନାର ଭାରତ**-- ଲେଖକ- **ଶ୍ରୀ ଅଚ୍ୟୁତାନନ୍ଦ ବିଶ୍ୱାଳ,** ରେଢ଼ାଖୋଲ, ସମ୍ବଲପୁର-୭୬୮୧୦୬, ମୂଲ୍ୟ- ୫୦ ଟଙ୍କା ମାତ୍ର।

ପ୍ରାୟ ୪୦ଟି ଶିଶୁ କବିତାରେ ପୁଷ୍ଟ ଡିମେଇ ଆକାରର ଏହି ଶିଶୁ ପୁସ୍ତକଟି। କବିତାଗୁଡ଼ିକ ସରଳ ତଥା ଶିକ୍ଷଣୀୟ। କବିତା ମଝିରେ ଚିତ୍ରସବୁ କବିତାଗୁଡ଼ିକର ଶୋଭାବର୍ଦ୍ଧନ କରୁଛି। ରଙ୍ଗିନ୍ ପ୍ରଚ୍ଛଦଟିରେ ଜାତୀୟ ପତାକା ସହିତ ଦୁଇଟି ବାଳକବାଳିକା ଠିଆ ହୋଇଥିବାର ଦୃଶ୍ୟ ରହିଛି। ଆଶା, ଏହି ପୁସ୍ତକଟି ଶିଶୁମାନଙ୍କ ଦ୍ୱାରା ଆଦୃତ ହେବ।

**ଦେଖିବା ସପନ ହେବାକୁ ବଡ଼**-- ଲେଖକ- **ଶ୍ରୀ ପୀତାମ୍ବର ଦାସ,** ଭାରତୀୟ ଜୀବନବୀମା ନିଗମ, ବାଲେଶ୍ୱର ଶାଖା, ଜଳେଶ୍ୱର-୭୫୬୦୦୧। ମୂଲ୍ୟ- ୨୦ ଟଙ୍କା ମାତ୍ର।

ଏହି ଡିମେଇ ଆକାରର ଶିଶୁ ପୁସ୍ତକଟି କବିଙ୍କର ଷଷ୍ଠ ଶିଶୁ କବିତା ସଂକଳନ। ୨୧ଟି ଶିଶୁ-କବିତା ଏଥିରେ ସନ୍ନିବେଶିତ ହୋଇଛି। ପ୍ରତ୍ୟେକ କବିତାରେ ସୁଦୃଶ୍ୟ ଚିତ୍ର ରହିଛି। କବିତାଗୁଡ଼ିକ ଯତିପାତରେ ଲେଖାଯାଇଥିବାରୁ ପିଲାଙ୍କ ମନକୁ ଛୁଇଁବାର ଆଶା ରଖୁଛୁ।

**ଆଶା**-- ଏହି କ୍ରାଉନ୍ ଆକାରର ତ୍ରୈମାସିକ ଶିଶୁ କିଶୋର ପତ୍ରିକାଟିର ସଂପାଦକ- **ଶ୍ରୀ ସୁମନ୍ତ ମହାରଣା,** ପାଟପୁର, ନିମାପଡ଼ା, ପୁରୀ। ସହଯୋଗ ରାଶି- ୧୦ ଟଙ୍କା ମାତ୍ର।

ଲେଖକମାନଙ୍କର ବିଜ୍ଞାନ ସମ୍ବନ୍ଧୀୟ ଗଳ୍ପ, ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଲେଖା ତଥା ପୁରାଣ କାହାଣୀ ସହିତ ଶିଶୁ-କବିତା ମଧ୍ୟ ରହିଛି। ପିଲାମାନଙ୍କର ନିଜସ୍ୱ ହାତ ଅଙ୍କା ଛବି ମଧ୍ୟ ରହିଛି। ପତ୍ରିକାର ରଙ୍ଗିନ୍ ପ୍ରଚ୍ଛଦରେ ବାଘକୁ ବସେଇ କୁକୁରଟି ରିକ୍ସା ଟାଣୁଥିବାର କାର୍ଟୁନଟି ପିଲାଙ୍କ ଲାଗି ଆକର୍ଷଣୀୟ ହୋଇଛି। ପତ୍ରିକାଟି ଆଦୃତ ହେଲେ ସଂପାଦକଙ୍କୁ ପରିଶ୍ରମର ମୂଲ୍ୟ ମିଳିଯିବ।




୨୮।୧-- ଓଡ଼ିଶା ହାଇକୋର୍ଟର ପ୍ରାକ୍ତନ ବିଚାରପତି ଚିଟ୍‌ଫଣ୍ଡ ଦୁର୍ନୀତିର ତଦନ୍ତ କମିଶନ ଭାବେ କାର୍ଯ୍ୟରତ ଜଷ୍ଟିସ ରାଧାକୃଷ୍ଣ ପାତ୍ରଙ୍କର ୭୨ ବର୍ଷରେ ପରଲୋକ।

୩୧।୧-- ଓଡ଼ିଶା ପୋଲିସର ପୂର୍ବତନ ମହାନିର୍ଦ୍ଦେଶକ ଶ୍ୟାମସୁନ୍ଦର ପାଢ଼ୀଙ୍କର ୮୬ ବର୍ଷରେ ପରଲୋକ ।

୩।୨-- ପୂର୍ବତନ ମନ୍ତ୍ରୀ ତଥା ବାଲେଶ୍ୱର ଜିଲ୍ଲା, ବସ୍ତା ନିର୍ବାଚନମଣ୍ଡଳୀର ବିଧାୟକ ଭୋପାଳ ଚନ୍ଦ୍ର ମହାପାତ୍ରଙ୍କର ୮୨ ବର୍ଷରେ ପରଲୋକ।

୧୨।୨-- ବିଶିଷ୍ଟ ସଙ୍ଗୀତ ଗୁରୁ ତଥା ଶାସ୍ତ୍ରୀୟ ସଙ୍ଗୀତ ସାଧକ ଶୁକଦେବ ପତ୍ରୀଙ୍କର ୮୯ ବର୍ଷରେ ପରଲୋକ।

୧୪।୨-- ନବରଙ୍ଗପୁର ଜିଲ୍ଲା ରାଜନୀତିର ଭୀଷ୍ମ ପିତାମହ ତଥା ପୂର୍ବତନ ମନ୍ତ୍ରୀ ଜନାବ୍ ହବିବୁଲ୍ଲା ଖାଁ'ଙ୍କର ୮୧ ବର୍ଷରେ ପରଲୋକ। ସେ ୩୮ ବର୍ଷ ବିଧାୟକ ଓ ୧୫ ବର୍ଷ ମନ୍ତ୍ରୀ ଥିଲେ।

୧୮।୨-- ପୂର୍ବତନ ମନ୍ତ୍ରୀ କାଳିନ୍ଦୀ ଚରଣ ବେହେରାଙ୍କର ୭୧ ବର୍ଷରେ ପରଲୋକ। ବିଜୁ ଜନତା ଦଳ ପ୍ରାର୍ଥୀ ଭାବେ କ୍ରମାଗତ ତିନିଥର ବିଧାନସଭାକୁ ନିର୍ବାଚିତ ହୋଇଥିଲେ।

୨୬।୧-- ଲବ୍ଧପ୍ରତିଷ୍ଠ ବ୍ୟଙ୍ଗ ଚିତ୍ରକାର ଆର.କେ. ଲକ୍ଷ୍ମଣଙ୍କର ୯୪ ବର୍ଷରେ ପରଲୋକ। ୧୯୫୧ରୁ ସେ ଇଂରାଜୀ ଦୈନିକ ଖବରକାଗଜ 'ଟାଇମ୍‌ସ ଅଫ୍ ଇଣ୍ଡିଆ'ରେ କାର୍ଯ୍ୟ କରିଆସୁଥିଲେ।

୨୩।୧-- ସାଉଦି ଆରବର ରାଜା ଅବଦୁଲ୍ଲା ବିନ୍ ଅବୁଦୁଲ୍ ଙ୍କର ୯୨ ବର୍ଷରେ ପରଲୋକ।



## ଶବ୍ଦଧନ୍ଦା-ମାର୍ଚ୍ଚ, ୨୦୧୫

ଡକ୍ଟର ନିରଞ୍ଜନ ସାହୁ

୧। କାଗଜରେ ବା କାର୍ଡରେ ଘର କାଟି ଉତ୍ତର ଲେଖନ୍ତୁ ।
୨। ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
୩। ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
୪। ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
୫। ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
୬। ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨।୩।୨୦୧୫
୭। ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | ୨ | ୩ | | ୪ | ୫ | ୬ |
| ★ | ୭ | | ★ | ★ | | |
| ୮ | | ୯ | ୧୦ | | | |
| | | ★ | | ★ | ★ | |
| ୧୧ | ୧୨ | ୧୩ | ୧୪ | ୧୫ | ୧୬ | ୧୭ |
| ୧୮ | | | ★ | ୧୯ | | |
| ★ | | ୨୦ | | | | |

### ସୂଚନା

**ବାମରୁ ଡାହାଣ--** ୧ । ଖୁଦୁରୁକୁଣୀ ଓଷାରେ ପୂଜିତ ଦେବୀ (୪), ୪ । କଥା (୩), ୭। ଥଙ୍ଗା (୨), ୮। ମୃତଦେହ (୨), ୯। ଏକ ମସଲା (୩), ୧୧। ନଇଁଥିବା (୨), ୧୪। ଏକ ପୁଷ୍ଟିକର ଫଳ (୪), ୧୮। ଦକ୍ଷିଣା ବାୟୁ (୩), ୧୯। ବୃକ୍ଷର ଅଂଶବିଶେଷ(୬), ୨୦। ପୃଥିବୀର ଆଦିଧର୍ମ (୪)।

**ଉପରୁ ତଳ--** ୧ । ବ୍ୟବହାର ହୋଇ ନଥିବା (୫), ୩। କେରଳର ଏକ ପର୍ବ (୭), ୫। ବିଜୁଳି (୩), ୬। ସ୍ୱାଗତ ଜଣାଇବା (୪), ୮। ଯମ (୩) ୧୦। ଆଗତୁରା ଅର୍ଥ ଦେବା (୩), ୧୨। ଶଯ୍ୟା (୩), ୧୩। କୁଆ (୩), ୧୫। ସାତ (୩), ୧୬। ପରିସ୍ରବଣ (୩), ୧୭। କୃଷ୍ଣ ତୃଣ(୩) ।

*--ସାହୁପଡ଼ା, ବରୀ, ଯାଜପୁର-୭୫୫୦୦୩*

---

**ଜାନୁଆରୀ ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧। ଇନ୍ଦିରାଗାନ୍ଧୀ, ୪। ବତା, ୫। ପଡ଼ିଶା, ୭। ମକା, ୯। କୋଦାଳ, ୧୦। ତୀରନ୍ଦାଜ, ୧୧। ହୁଦା, ୧୩। ବଣ, ୧୪। ବାର, ୧୬। କରଞ୍ଜ, ୧୭। କମା, ୧୮। ଅଙ୍ଗନ, ୧୯। ପାଳି ।

**ଉପରୁ ତଳ--** ୧। ଇନ୍ଦୁମତୀ, ୨। ରାଣ, ୩। ଗାନ୍ଧାରୀ, ୪। ବଡ଼ି, ୬। ଶାଳ, ୮। କାରଣ, ୧୦। ଦାଦା, ୧୩। ଜପାମାଳି, ୧୪। ବତକ, ୧୫। ବାରଙ୍ଗ, ୧୬। ରଞ୍ଜନ, ୧୮। କପା ।

---

ଠିକ୍ ଉତ୍ତରଦାତାଙ୍କ ନାମ-- **ରାଜକିଶୋର ସାହୁ,** ଓଡଗାଁ, ନୟାଗଡ଼; **ସ୍ୱରୂପ ସୁବୁଦ୍ଧି,** ପୁରୀ ଜିଲ୍ଲା ସ୍କୁଲ, ପୁରୀ; **ଲକ୍ଷ୍ମୀପ୍ରିୟା ଦାସ,** ସୁଦର୍ଶନ ନଗର, ପୁରୀ

ଏକ ଭୁଲ୍ ଉତ୍ତର-- **ନିଶିକାନ୍ତ ବେହେରା**




## ଓଡ଼ିଶା ଖବର

୨୨।୧-- ଓଡ଼ିଶା ସଙ୍ଗୀତ ନାଟକ ଏକାଡେମିର ନୂତନ ସଭାପତି ଭାବେ କଣ୍ଠଶିଳ୍ପୀ ତୃପ୍ତି ଦାସ ମନୋନୀତ।

୩୧।୧-- ଆସନ୍ତା ନବକଳେବର ପାଇଁ ପର୍ଯ୍ୟଟକଙ୍କ ଭିଡ଼କୁ ଆଖିରେ ରଖି ପୁରୀକୁ ୧୪୦ଟି ଟ୍ରେନ୍‌ର ବ୍ୟବସ୍ଥା।

୨।୨-- ଢେଙ୍କାନାଳର ବିଶ୍ୱପ୍ରସିଦ୍ଧ ମହିମାଗାଦି ଯୋରନ୍ଦା ଠାରେ ୧୪୨ ତମ ମହିମା ମେଳା ଆରମ୍ଭ।

୫।୨-- ଓଡ଼ିଶା ହାଇକୋର୍ଟର ଅବସରପ୍ରାପ୍ତ ବିଚାରପତି ଜଷ୍ଟିସ୍ ମଦନମୋହନ ଦାସ ଚିଟ୍‌ଫଣ୍ଡ ଦୁର୍ନୀତି ତଦନ୍ତ ଆୟୋଗର ନୂତନ ମୁଖ୍ୟ ଭାବେ ନିଯୁକ୍ତ।

୧୧।୨-- କଟକ ସହରରେ ଜଣ୍ଡିସ୍‌ରେ ୮୯ ଜଣ ଆକ୍ରାନ୍ତ।

୧୬।୨-- ଆସନ୍ତା ୨୦୧୫-୧୬ ବର୍ଷ ପାଇଁ ବିଧାନସଭାରେ ବଜେଟ୍ ଉପସ୍ଥାପିତ। ମୋଟ ଅଟକଳ - ୮୪,୪୮୬.୭୬ କୋଟି ଟଙ୍କା।

## ଭାରତ ଖବର

୨୩।୧-- ଲାଲକୃଷ୍ଣ ଆଡ଼ଭାନୀ, ଅମିତାଭ ବଚ୍ଚନ, ଯୋଗଗୁରୁ ବାବା ରାମଦେବ, ଶ୍ରୀ ରବିଶଙ୍କର, ପଞ୍ଜାବ ମୁଖ୍ୟମନ୍ତ୍ରୀ ପ୍ରକାଶ ସିଂହ ବାଦଲଙ୍କସହ ୧୦୪ ଜଣ ବ୍ୟକ୍ତିବିଶେଷଙ୍କୁ ପଦ୍ମ ପୁରସ୍କାର ପାଇଁ ମନୋନୀତ ଏବଂ ନାଏକ ନୀରଜ କୁମାର ସିଂହଙ୍କୁ ମରଣୋତ୍ତର ଅଶୋକଚକ୍ର ପ୍ରଦାନ।

୨୫।୧-- ସାଇନା ନେହୱାଲ୍ ଓ କଶ୍ୟପ ସୟଦ ମୋଦିଙ୍କର ଲକ୍ଷ୍ନୌଠାରେ ଆନ୍ତର୍ଜାତିକ ବ୍ୟାଡ୍‌ମିଣ୍ଟନ୍ ଟୁର୍ଣ୍ଣମେଣ୍ଟରେ ସିଙ୍ଗଲସ୍ ଚମ୍ପିଆନ୍ ଆଖ୍ୟା ଅର୍ଜନ।

୨୬।୧-- ଆମେରିକାର ରାଷ୍ଟ୍ରପତି ବାରାକ୍ ଓବାମାଙ୍କ ତିନିଦିନିଆ ଭାରତ ଗସ୍ତ ପରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ।

୨୮।୧-- ବୈଦେଶିକ ସଚିବ ପଦରୁ ସୁଜାତା ସିଂହ ବହିଷ୍କୃତ ଏବଂ ତାଙ୍କ ସ୍ଥାନରେ ସୁବ୍ରମଣ୍ୟମ୍ ଜୟଶଙ୍କର ନିଯୁକ୍ତ।

୩୦।୧-- କୋଲ୍ ଇଣ୍ଡିଆ ଲିମିଟେଡ୍‌ର ଅଂଶଧନ ବିକ୍ରି ଶେଷ। ଏଥିରେ ସରକାରଙ୍କୁ ପ୍ରାୟ ୧୨.୬୦୦ କୋଟି ମିଳିବାର ଆଶା।

୧।୨-- ଅନ୍ଧେରୀର ଯଶରାଜ ଷ୍ଟୁଡିଓଠାରେ ୬୦ତମ ଫିଲ୍ମ ଫେୟାର ପୁରସ୍କାର-୨୦୧୪ଉତ୍ସବରେ ଶ୍ରେଷ୍ଠ ଅଭିନେତା ସାହିଦ କପୁର (ହାଇଦର) ଓ ସଞ୍ଜୟ ମିଶ୍ର (ଆଁଖେ ଦେଖି)। ଶ୍ରେଷ୍ଠ ଅଭିନେତ୍ରୀ କଙ୍ଗନା ରଣାୱାତ ଓ ଆଲିଆ ଭଟ୍ଟ (ହାଇୱେ)। ଶ୍ରେଷ୍ଠ ଚଳଚ୍ଚିତ୍ର କୁଇନ୍ ପୁରସ୍କୃତ।

୫।୨-- ଏଲସି ଗୋଏଲଙ୍କର ନୂତନ ସ୍ୱରାଷ୍ଟ୍ର ସଚିବ ଭାବେ ଦାୟିତ୍ୱ ଗ୍ରହଣ।

୬।୨-- ମରାଠୀ ସାହିତ୍ୟିକ ପଦ୍ମଶ୍ରୀ ଭାଲଚନ୍ଦ୍ର ନେମେଡ଼େ ୨୦୧୪ର ୫୦ତମ 'ଜ୍ଞାନପୀଠ' ପୁରସ୍କାର ପାଇଁ ମନୋନୀତ।

୭।୨-- ବିହାର ମୁଖ୍ୟମନ୍ତ୍ରୀ ଜିତନରାମ୍ ମାନ୍‌ଝି ସଂଯୁକ୍ତ ଜନତା ଦଳରୁ ବହିଷ୍କୃତ।

-- ଓଡ଼ିଶା ଉପକୂଳର ସୁରକ୍ଷା ପାଇଁ ଭାରତୀୟ ତଟରକ୍ଷା ବାହିନୀରେ ଅତ୍ୟାଧୁନିକ ଯୁଦ୍ଧ ଜାହାଜ 'ଅମୋଘ' ସାମିଲ।

୧୦।୨-- ଦିଲ୍ଲୀ ନିର୍ବାଚନରେ ୭୦ଟି ଆସନ ମଧ୍ୟରୁ ୬୭ଟିରେ ଆମ୍ ଆଦ୍‌ମୀ ପାର୍ଟି ଓ ବିଜେପି ତିନୋଟି ଆସନରେ ବିଜୟୀ।

୧୩।୨-- ଦିଲ୍ଲୀର ମୁଖ୍ୟମନ୍ତ୍ରୀ ଭାବେ କେଜରିୱାଲ ଓ ଉପମୁଖ୍ୟମନ୍ତ୍ରୀ ଭାବେ ମନୀଷା ସିସୋଦିଆଙ୍କ ଶପଥ ଗ୍ରହଣ।

୧୫।୨-- ଦିଲ୍ଲୀରେ ସ୍ୱାଇନ୍‌ଫ୍ଲୁରେ ୬୬୩ ଜଣଙ୍କର ମୃତ୍ୟୁ। ଗୁଜୁରାଟ, ରାଜସ୍ଥାନ, ମହାରାଷ୍ଟ୍ର, ତେଲେଙ୍ଗାନା, ଓ ମଧ୍ୟପ୍ରଦେଶରେ ବହୁ ଲୋକ ଆକ୍ରାନ୍ତ।

୧୬।୨-- ଭାରତ ଓ ଶ୍ରୀଲଙ୍କା ମଧ୍ୟରେ ବେସାମରିକ ପରମାଣୁ ଚୁକ୍ତି ସ୍ୱାକ୍ଷରିତ।

୧୮।୨-- ବେଙ୍ଗାଲୁର୍ ଠାରେ ଏସିଆର ସବୁଠାରୁ ବଡ଼ ଏୟାର-ଶୋ ୧୦ମ ଆନ୍ତର୍ଜାତୀୟ 'ଏରୋଇଣ୍ଡିଆ' ଉଦ୍‌ଘାଟିତ।

## ବିଦେଶ ଖବର

୩୦।୧-- କରାଚୀଠାରେ ଥିବା ଶିକାରପୁରର ସିହା ମସଜିଦ୍‌ରେ ବିସ୍ଫୋରଣ ଘଟି ୬୦ ମୃତ ଓ ୫୦ ଆହତ।

୧।୨-- ଅପହୃତ ଜାପାନୀ ସାମ୍ବାଦିକ କେନ୍‌ଜି ଗୋଟୋଙ୍କୁ ଆଇଏସ୍‌ଆଇଏସ୍ ଆତଙ୍କବାଦୀମାନେ ହତ୍ୟା କରିଛନ୍ତି।

୪।୨-- ତାଇୱାନର ରାଜଧାନୀ ତାଇପେରେ ଟ୍ରାନ୍‌ସ ଏସିଆର ଏକ ଯାତ୍ରୀବାହୀ ବିମାନ ଦୁର୍ଘଟଣାରେ ୨୫ ଜଣ ମୃତ, ୧୬ ଜଣ ଆହତ ଏବଂ ୧୭ ଯାତ୍ରୀ ନିଖୋଜ।

୧୨।୨-- ୨୦୧୫, ୧୧ଶ ବିଶ୍ୱକପ୍ କ୍ରିକେଟ୍ ଉଦ୍‌ଘାଟିତ। ନ୍ୟୁଜିଲାଣ୍ଡର ଓ ଅଷ୍ଟ୍ରେଲିଆର ୧୪ଟି ସହରରେ ପ୍ରାୟ ଦେଢ଼ ମାସ ଧରି ୧୪ଟି ଦେଶ ମଧ୍ୟରେ ଏହା ଖେଳାଯିବ।